

RED FORT ADDRESS....

ଲାଲକିଲ୍ଲା ଠାରେ
ଜାତି ଉଦ୍ଦେଶ୍ୟରେ
ରାଜୀବଗାନ୍ଧୀଙ୍କ ଭାଷଣ



ASSAM ACCORD SIGNED

ଆସାମ
ଚୁକ୍ତିନାମା
ସ୍ୱାକ୍ଷରିତ

# ଉତ୍କଳ ପ୍ରସଙ୍ଗ

ଭାଦ୍ରବ ୧୯୦୭ ଶକାବ୍ଦ   ୪୨ ଭାଗ   ୨ୟ ସଂଖ୍ୟା   ସେପ୍ଟେମ୍ବର ୧୯୮୫


## ସମ୍ପାଦନା ମଣ୍ଡଳୀ

ନିର୍ଦ୍ଦେଶକ : ଶ୍ରୀ ରମାନାଥ ମହାନ୍ତି

ସମ୍ପାଦକ : ଶ୍ରୀ ବ୍ରଜ ମୋହନ ପଟ୍ଟନାୟକ

ସହ ସମ୍ପାଦକ : ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସହଯୋଗୀ ସମ୍ପାଦକ : ଶ୍ରୀ ଉପେନ୍ଦ୍ର ପ୍ରସାଦ ଦାସ

**ମୁଖ୍ୟ ସମ୍ପାଦକ**

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ

**ପ୍ରଚ୍ଛଦ ଶିଳ୍ପୀ**

ଶ୍ରୀ ପ୍ରଦ୍ୟୁମ୍ନ କୁମାର ଦାଶ



**ପ୍ରକାଶନ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ବର

ବାର୍ଷିକ ଦେୟ : ୧୦.୦୦

ପ୍ରତି ଖଣ୍ଡ : ୧.୦୦

**ମୁଦ୍ରଣ :**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ



**ଓଡ଼ିଶା ସରକାରଙ୍କ** ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ ''ଉତ୍କଳ ପ୍ରସଙ୍ଗ''ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠବୋଲି ଭାବିବା ଉଚିତ ନୁହେଁ ।

**'ଉତ୍କଳ ପ୍ରସଙ୍ଗ'** ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ଉତ୍କଳ ପ୍ରସଙ୍ଗ

## ସୂଚୀପତ୍ର



ଗାଅ ହେ ଗଣପତି ଜଗ ବନ୍ଦନ ...

ଶିଳ୍ପୀ : ଶ୍ରୀ ଶ୍ରୀନିବାସ ମହାନ୍ତି, ଭୁବନେଶ୍ୱର-୯



ଗୁରୁଦିବସ ଉପଲକ୍ଷେ

# ମୁଖ୍ୟମନ୍ତ୍ରୀ
# ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ

# ବାର୍ତ୍ତା

"ଆଜିର ପବିତ୍ର ଗୁରୁଦିବସ ଉପଲକ୍ଷେ ରାଜ୍ୟର ଶିକ୍ଷକବର୍ଗଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ।

"ସମାଜରେ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଜିର ପରିସ୍ଥିତିରେ ଶିକ୍ଷାକୁ ଉପଯୋଗୀ ଏବଂ ସୁଦୂରପ୍ରସାରୀ କରିବା ଏକ ଜାତୀୟ ଲକ୍ଷ୍ୟ, ତେଣୁ ଶିକ୍ଷକ ସମାଜର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି ।

"ସବୁଦେଶରେ, ସବୁ ଯୁଗରେ ଶିକ୍ଷକମାନଙ୍କୁ ସମାଜରେ ସର୍ବୋଚ୍ଚ ସମ୍ମାନ ମିଳିଆସିଛି । ଗୁରୁ ଦେବତୁଲ୍ୟ ଏବଂ ଗୁରୁମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ସମସ୍ତଙ୍କ ପବିତ୍ର କର୍ତ୍ତବ୍ୟ—ଏହା ମଧ୍ୟ ଆମର ପ୍ରାଚୀନ ପରଂପରା । ଯୁଗର ପରିବର୍ତ୍ତନ ସତ୍ତ୍ୱେ ଏହି ପ୍ରାଚୀନ ପରଂପରା ଆଜି ମଧ୍ୟ ପ୍ରତ୍ୟେକ ଭାରତୀୟର ଅନ୍ତରରେ ଉଜ୍ଜୀବିତ। ଏହି ପରଂପରା ଆହୁରି ବଳବତ୍ତର ହେଉ ଏବଂ ଶିକ୍ଷକ ସମାଜ ନିଜର ତ୍ୟାଗ ଏବଂ କର୍ତ୍ତବ୍ୟନିଷ୍ଠା ଦ୍ୱାରା ଏକ ସୁସଭ୍ୟ, ସଂସ୍କୃତ, ସମୃଦ୍ଧ, ଜ୍ଞାନବିଜ୍ଞାନ ଉପରେ ଆଧାରିତ ଏକବିଂଶ ଶତାବ୍ଦୀର ଭାରତବର୍ଷ ଗଠନ କରିବାରେ ବ୍ରତୀ ହୁଅନ୍ତୁ—ଏହାହିଁ ଆଜିର ପବିତ୍ର ଦିବସରେ ମୋର ଆନ୍ତରିକ କାମନା ।"



### ଗୁରୁଦିବସ ଉପଲକ୍ଷେ

# ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସମହାପାତ୍ର ଙ୍କ

# ବାର୍ତ୍ତା

"ଯୁଗେ ଯୁଗେ ଶିକ୍ଷକମାନେ ଆମ ସମାଜରେ ସର୍ବୋଚ୍ଚ ସମ୍ମାନର ଅଧିକାରୀ ହୋଇଆସିଛନ୍ତି ଏବଂ ସୁନାମଧନ୍ୟ ଶିକ୍ଷକମାନଙ୍କର ମହାନ୍ ଅବଦାନରେ ଆମର ଶିକ୍ଷା ଏବଂ ସଂସ୍କୃତିର ଇତିହାସ ସମୃଦ୍ଧ । ଆଜିର ପରିପ୍ରେକ୍ଷୀରେ ଶକ୍ଷକ ସମାଜର ଭୂମିକା ଅଧିକ ଗୁରୁତପୂର୍ଣ୍ଣ, ଯେହେତୁ ଏକ ଆଧୁନିକ ଭାରତବର୍ଷର ଯୋଗ୍ୟ ନାଗରିକ ଗଠନ କରିବାର ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ ।

ଆଜି ଜାତୀୟ ଜୀବନରେ ଶିକ୍ଷାକୁ ଗୁରୁତ୍ୱ ଦିଆଯାଇଅଛି । ମୋର ପୂର୍ଣ୍ଣ ବିଶ୍ୱାସ, ଶିକ୍ଷକମାନେ ସେମାନଙ୍କର ଏହି ନୂତନ ଦାୟିତ୍ୱ ସଂପର୍କରେ ସଚେତନ ଏବଂ ସେମାନେ ତାଙ୍କର ଏହି ଗୌରବୋଜ୍ଜ୍ୱଳ ଅତୀତ ପରି ଭବିଷ୍ୟତରେ ମଧ୍ୟ ଏହି ଗୁରୁ ଦାୟିତ୍ୱ ସଂପାଦନ କରିବାରେ କୃତକାର୍ଯ୍ୟ ହେବେ । ଆଜିର ପବିତ୍ର ଦିବସରେ ଆମେ ସମସ୍ତେ ଶିକ୍ଷକ ସମାଜ ପ୍ରତି ଆମର ସମ୍ମାନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଗୁରୁକୁଳ ପ୍ରତି ଆମର ଦାୟିତ୍ୱ ବିଷୟରେ ଅବଗତ ରହିବା ଉଚିତ ।

"ମୁଁ ଓଡ଼ିଶାର ଶିକ୍ଷକବର୍ଗଙ୍କୁ ଗୁରୁଦିବସ ଉପଲକ୍ଷେ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।"

# ମୋ ଦୃଷ୍ଟିରେ ....

"ଉତ୍କଳ ପ୍ରସଙ୍ଗ" ଏହି ସେପ୍ଟେମ୍ବର ସଂଖ୍ୟାଟିକୁ "ବିଚିତ୍ରାନନ୍ଦ ଓ ଭୁବନାନନ୍ଦ" ବିଶେଷାଙ୍କରୂପେ ପ୍ରସ୍ତୁତ କରି ପାଠକ ପାଠିକାଙ୍କୁ ଅର୍ପଣ କରୁଅଛି ।

ଯେଉଁ କେତେକ ବରେଣ୍ୟ ବୀରଙ୍କର ତ୍ୟାଗପୂତ ସଂଗ୍ରାମ ଫଳରେ ଆମ ଭାରତ ଜନନୀଙ୍କର ପରାଧୀନତାର ବେଡ଼ୀ ବନ୍ଧନ ଫିଟିଛି ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱପ୍ନ ସାର୍ଥକ ହୋଇଛି, ସେମାନଙ୍କ ମଧ୍ୟରୁ ସ୍ୱାମୀ ବିଚିତ୍ରାନନ୍ଦ ଓ ଭୁବନାନନ୍ଦ ଅନ୍ୟତମ । ଏ ବର୍ଷ ଗତ ମଇ ୧୪ ତାରିଖରେ ରାଜ୍ୟ ସୂଚନା ଭବନଠାରେ ତାଙ୍କର ଜନ୍ମ ଶତବାର୍ଷିକୀ ଉତ୍ସବ ପାଳିତ ହୋଇଯାଇଛି । ଓଡ଼ିଶାର ଏଇ ଜମଜ ନେତୃଦ୍ୱୟଙ୍କ ପ୍ରତି ରାଜ୍ୟର ନେତୃମଣ୍ଡଳୀ ତଥା ଜନସାଧାରଣ, ତାଙ୍କର ସ୍ମୃତି ସ୍ମରଣ କରି ହୃଦୟର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳୀ ଜଣାଇ ଅଛନ୍ତି । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ତାଙ୍କୁ ଗୋଟିଏ ବୃନ୍ତର ଦୁଇଟି ଫୁଲ ଭାବରେ ବର୍ଣ୍ଣନା କରି ଏହି ଦୁଇ ଯାଆଁଳା ଭାଇ ଯେ ଏକଦା ସମଗ୍ର ଭାରତବର୍ଷକୁ ସୁବାସିତ କରି ପାରିଥିଲେ ତାହାର କେତେକ ସୂଚନା ସେ ତାଙ୍କର "ଗୋଟିଏ ବନ୍ତରେ ଦୁଇଟି ଫୁଲ" ନିବନ୍ଧରେ ଉଲ୍ଲେଖ କରିଛନ୍ତି ।

ବୟୋଜ୍ୟେଷ୍ଠ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଜଷ୍ଟିସ ହରିହର ମହାପାତ୍ର, ବିଶ୍ୱରପତି ରାଜକିଶୋର ଦାସ, ସୁସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ର, ସମାଜ ସେବକ ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର ପ୍ରମୁଖ ଓଡ଼ିଶାର ବହୁ ବିଶିଷ୍ଟ ବୁଦ୍ଧିଜୀବୀ ଏଇ ସଂଖ୍ୟାରେ ସେମାନଙ୍କର ସ୍ମୃତି ସ୍ମରଣ କରିଛନ୍ତି ।

କୃଷିମନ୍ତ୍ରୀ ଶ୍ରୀ ଶରତ ଚନ୍ଦ୍ର ପଣ୍ଡା "ସପ୍ତମ ଯୋଜନାରେ କୃଷି" ପ୍ରବନ୍ଧରେ ରାଜ୍ୟର କୃଷି ବିକାଶ କ୍ଷେତ୍ରରେ ନଆଯାଉଥିବା ବିଭିନ୍ନ ପଦକ୍ଷେପର ସୂଚନା ଦେଇଛନ୍ତି । ଏତଦ୍‌ବ୍ୟତୀତ ଓଡ଼ିଶାରେ କୃଷି ଗବେଷଣା କାର୍ଯ୍ୟକ୍ରମ, କ୍ଷୁଦ୍ର ଜଳସେଚନ, ଓଡ଼ିଶାରେ ହସ୍ତତନ୍ତ ଶିଳ୍ପ ଇତ୍ୟାଦି ବହୁ ତଥ୍ୟସମ୍ବଳିତ ପ୍ରବନ୍ଧ କୃଷି ଓ କୁଟୀର ଶିଳ୍ପ ପ୍ରେମୀ ପାଠକମାନଙ୍କର ଆଦର ଲାଭ କରିବ ।

ଗୁରୁଦିବସ ପରିପ୍ରେକ୍ଷୀରେ "ଗୁରୁଦିବସ–ଏକ ଅନୁଚିନ୍ତା" ଶୀର୍ଷକ ଏକ ନିବନ୍ଧ ଏ ସଂଖ୍ୟାରେ ସ୍ଥାନ ପାଇଛି ।



# ଗୋଟିଏ ବୃନ୍ତରେ ଦୁଇଟି ଫୁଲ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

**ଗୋ**ଟିଏ ବୃନ୍ତର ଦୁଇଟି ଫୁଲ ଭାବରେ ଓଡ଼ିଶାର ଯେଉଁ ଦୁଇଜଣ ଯାଆଁଳା ଭାଇ ଏକଦା ସମଗ୍ର ଭାରତବର୍ଷକୁ ସୁବାସିତ କରିଥିଲେ ସେ ହେଉଛନ୍ତି ସ୍ୱାମୀ ବିଚିତ୍ରାନନ୍ଦ ଓ ଇଞ୍ଜିନିୟର ଭୁବନାନନ୍ଦ । ଆଜି ସେ ଦୁହିଁଙ୍କର ଜନ୍ମ ଶତବାର୍ଷିକୀ ପାଳନ କରାଯାଉଛି । ଦୁହେଁ ବିଭିନ୍ନ କ୍ଷେତ୍ରରେ ନିଜର ମହାନ୍ ବ୍ୟକ୍ତିତ୍ୱ ପ୍ରମାଣିତ କରି ତାଙ୍କର ଉତ୍ତର ପୁରୁଷଙ୍କ ପାଇଁ ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା ଜାଳି ଦେଇଛନ୍ତି । ଉଭୟ ଛାତ୍ର ଜୀବନରେ ଆଦର୍ଶ ଛାତ୍ର ଥିଲେ । ମେଧାବୀ ଛାତ୍ର ଭାବରେ ସେମାନେ ବୃତ୍ତି ଲାଭ କରି ଉଚ୍ଚ ଶିକ୍ଷା ସମାପନ କରିଥିଲେ ଓ ଅଶେଷ ପ୍ରଶଂସିତ ହୋଇଥିଲେ । ସ୍ୱାମୀଜୀ ଓକିଲାତି କରିଥିଲେ ଓ ଭୁବନାନନ୍ଦ ବାବୁ ଜଣେ ସ୍ୱନାମଧନ୍ୟ ଇଞ୍ଜିନିୟର ଭାବେ ତାଙ୍କର ଜୀବନ ଆରମ୍ଭ କରିଥିଲେ । ସ୍ୱାମୀଜୀ ଆଇନଜୀବୀ ଭାବେ ନିଜର ଦକ୍ଷତା ପ୍ରତିପାଦନ କରି ଆଡ଼ଭୋକେଟ୍ ଜେନେରାଲ ପଦକୁ ଉନ୍ନୀତ ହୋଇଥିଲେ । ଭୁବନାନନ୍ଦ ବାବୁ ଜଣେ ଦକ୍ଷ ଇଞ୍ଜିନିୟର ଭାବରେ ସମଗ୍ର ଭାରତବର୍ଷରେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ବିଶେଷ ଭାବରେ ବିଜୁଳି ସରବରାହ କ୍ଷେତ୍ରରେ ବିଭିନ୍ନ ରାଜ୍ୟରେ କାର୍ଯ୍ୟ କରି ସେ ତାଙ୍କର ପ୍ରତିଷ୍ଠା ଅର୍ଜନ କରି ଯାଇଛନ୍ତି । ପୁରୀ ଇଲେକ୍ଟ୍ରିସିଟି କମ୍ପାନୀର ପ୍ରତିଷ୍ଠାତା ଭାବରେ ତାଙ୍କର ଅବଦାନ ବହୁତ ବେଶୀ ।

ଜଣେ ଦକ୍ଷ ଇଞ୍ଜିନିୟର ବା ଜଣେ ସ୍ୱନାମଧନ୍ୟ ଓକିଲ ଭାବରେ ଆମେ ଯେ ଆଜି ତାଙ୍କୁ ମନେ ପକାଉଛୁ ତାହା ନୁହେଁ । ଯେଉଁ ସମୟରେ ଏହି ଦୁଇ ଭାଇଙ୍କର ଓଡ଼ିଶାରେ ଜନ୍ମ ସେ ସମୟ ସମଗ୍ର ଭାରତବର୍ଷ ଓ ଓଡ଼ିଶା ପାଇଁ ଏକ ସନ୍ଧିକ୍ଷଣ । ଦେଶକୁ ସ୍ୱାଧୀନକରିବା ପାଇଁ ଭାରତବର୍ଷ ସାରା ସ୍ୱାଧୀନତା ସଂଗ୍ରାମର ଆହ୍ୱାନ ଆସିଥାଏ । ବିଶେଷ ଭାବରେ ସେତେବେଳେ ବିଭିନ୍ନ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିବା କୃତୀ ସନ୍ତାନମାନଙ୍କ ନିକଟରେ ଏ ଆହ୍ୱାନ ଥାଏ ସବୁଠାରୁ ବେଶୀ । ଆମମାନଙ୍କର ସୌଭାଗ୍ୟ ଓ ଗୌରବ, ସେତେବେଳେ ଓଡ଼ିଶାରେ ଯେଉଁମାନେ କୃତିତ୍ୱ ଅର୍ଜନ କରିଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ, ଦେଶ ମାତୃକାର ସେବା ପାଇଁ ସେମାନଙ୍କର ଜୀବନକୁ ଉତ୍ସର୍ଗ କରି ଯାଇଛନ୍ତି । ସେହିମାନଙ୍କ ମଧ୍ୟରୁ ସ୍ୱାମୀଜୀ ଓ ଭୁବନାନନ୍ଦ ବାବୁଙ୍କୁ ସେଥିପାଇଁ ବିଶେଷ ଭାବରେ ଆମର ସ୍ମରଣ କରିବାର କଥା ।

ଭୁବନାନନ୍ଦ ବାବୁ ଜଣେ ଖ୍ୟାତନାମା ପାର୍ଲାମେଣ୍ଟେରିଆନ୍ ଭାବରେ ନିଜର ପ୍ରତିଷ୍ଠା ଅର୍ଜନ କରି ଯାଇଛନ୍ତି । ସମସ୍ତେ ଜାଣନ୍ତି ଯେ ସ୍ୱାଧୀନତା ସଂଗ୍ରାମ ବେଳେ ସ୍ୱରାଜ ପାର୍ଟିର ଜନ୍ମ ହୋଇଥିଲା ଏବଂ ସେ ସ୍ୱରାଜ ପାର୍ଟିର ଜଣେ ଉଚ୍ଚକୋଟୀର ସଭ୍ୟ ଥିଲେ । ସେତେବେଳେ ପାର୍ଲାମେଣ୍ଟରେ ତାଙ୍କ

କାର୍ଯ୍ୟାବଳୀର ବହୁ ପ୍ରଶଂସା କରାଯାଇଛି । ସ୍ୱାଧୀନତା ପରେ ମଧ୍ୟ ସେ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ପାର୍ଲାମେଣ୍ଟର ସଭ୍ୟ ହୋଇ ରହିଥିଲେ । ଦୀର୍ଘ ୪୩ ବର୍ଷ ଧରି (୧୯୧୫ରୁ ୧୯୫୮ ମସିହା ପର୍ଯ୍ୟନ୍ତ) ସେ ପାର୍ଲାମେଣ୍ଟର ସଦସ୍ୟ ଥିବାରୁ ତାଙ୍କୁ ଫାଦର ଅଫ୍ ଦି ହାଉସ୍ (father of the House) ବୋଲି କୁହାଯାଉଥିଲା । ଭାରତବର୍ଷରେ ଖୁବ୍ କମ୍ ବ୍ୟକ୍ତି ସେ ସୁନାମ ଅର୍ଜନ କରିଛନ୍ତି । ପାର୍ଲାମେଣ୍ଟର ଯେ ସେ ଜଣେ ସାଧାରଣ ସଭ୍ୟ ଥିଲେ ତା' ନୁହେଁ । ପବ୍ଲିକ୍ ଆକାଉଣ୍ଟସ୍ କମିଟିର ଚେୟାରମ୍ୟାନ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ସାଧାରଣତଃ ବିରୋଧୀଦଳର ନେତା ହୁଅନ୍ତି ଏ କମିଟିର ଚେୟାରମ୍ୟାନ । କିନ୍ତୁ ତାଙ୍କ ପାଇଁ ତାହା ଥିଲା ଏକ ବ୍ୟତିକ୍ରମ । କଂଗ୍ରେସ ଦଳର ସଦ୍ୟସ ହୋଇ ଦୀର୍ଘକାଳ ସେ ପବ୍ଲିକ୍ ଆକାଉଣ୍ଟସ କମିଟିର ଚେୟାରମ୍ୟାନ୍ ଭାବରେ ଅତି ପ୍ରଶଂସନୀୟ କାର୍ଯ୍ୟ କରିଯାଇଛନ୍ତି । ଏପରିକି କୌଣସି ବିରୋଧୀ ଦଳର ନେତା ମଧ୍ୟ ସେପରି ସମାଲୋଚନା କରି ପାରନ୍ତେ ନାହିଁ ବୋଲି ପାର୍ଲାମେଣ୍ଟ ସଭ୍ୟମାନେ ମନେ କରୁଥିଲେ । ପାର୍ଲାମେଣ୍ଟରେ ତାଙ୍କର ସମସ୍ତ ରିପୋର୍ଟର ଉଚ୍ଚ ପ୍ରଶଂସା କରାଯାଇଅଛି । କେବଳ ସେତିକି ନୁହେଁ ପାର୍ଲାମେଣ୍ଟରେ ସେ ଯେଉଁ ସବୁ ଭାଷଣ ଦେଇଛନ୍ତି ସେଗୁଡ଼ିକୁ ଆଜି ଆମ ସମସ୍ତଙ୍କର ସ୍ମରଣ କରିବାର କଥା । ଦେଶ ସ୍ୱାଧୀନ ହେବା ପୂର୍ବରୁ ଇମ୍ପେରିଆଲ ବ୍ୟାଙ୍କକୁ ଜାତୀୟକରଣ କରାଯିବା ପାଇଁ ପାର୍ଲାମେଣ୍ଟରେ ସେ ବାରମ୍ବାର ଦାବୀ ଉପସ୍ଥାପିତ କରିଥିଲେ । ସେ କହୁଥିଲେ ବ୍ରିଟିଶ୍ ସାମ୍ରାଜ୍ୟର ସେବା କରିବା ପାଇଁ ଇମ୍ପେରିୟାଲ ବ୍ୟାଙ୍କକୁ ସୃଷ୍ଟି କରାଯାଇଅଛି । ଭାରତର ଜନସାଧାରଣଙ୍କ ସେବା କରିବା ପାଇଁ ଦେଶର ବ୍ୟାଙ୍କ୍ କିପରି ସାଧାରଣ କୃଷକ ଏବଂ ଶ୍ରମିକଙ୍କ ମଙ୍ଗଳ କାର୍ଯ୍ୟରେ ଲାଗିପାରିବ । ସେଥିପାଇଁ ସେ ଦୃଢ଼ ଦାବୀ ଜଣାଇଥିଲେ । ଷ୍ଟେଟ୍ ବ୍ୟାଙ୍କ୍ ଓ ରିଜର୍ଭ ବ୍ୟାଙ୍କକୁ ଜାତୀୟକରଣ କରାଯିବା ନିମନ୍ତେ ଭୁବନାନନ୍ଦ ବାବୁ ଆନ୍ଦୋଳନ କରିଥିଲେ । ତାଙ୍କ ଆନ୍ଦୋଳନର ବହୁ ବର୍ଷ ପରେ ଭାରତର ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବ୍ୟାଙ୍କ୍ ଜାତୀୟକରଣ କଲେ । ତେଣୁ ଜଣେ ପାର୍ଲାମେଣ୍ଟେରିଆନ୍ ଭାବରେ ଦେଶର ଜନସାଧାରଣଙ୍କର ସେବା କରିବା ପାଇଁ ସେ ନିଜ ଜୀବନକୁ ସମର୍ପିତ ଓ ନିୟୋଜିତ କରିଥିଲେ ।

ତାଙ୍କ ଜୀବନର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ରହିଛି । ସ୍ୱତନ୍ତ୍ର ଉତ୍କଳ ଗଠନ କରିବା ପାଇଁ ତାଙ୍କର କାର୍ଯ୍ୟକୁ ଆମେ ସ୍ମରଣ କରିବା କଥା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରାଯିବା ଅଧ୍ୟାୟରେ ଅନେକ ସମୟରେ ଆମେ ତାଙ୍କ କଥା ଭୁଲିଯାଉ । ସେ ସମୟର କଥା ବିସ୍ତାରକୁ ନେଲାବେଳେ ଭୁବନାନନ୍ଦ ବାବୁ ଆଲୋଚନାର ଅଗ୍ରଭାଗକୁ ଆସିଥାନ୍ତି । ସେତେବେଳର ଯୁଗ ଥିଲା ଓଡ଼ିଶା ପାଇଁ ଏକ ଅନ୍ଧକାରମୟ ଯୁଗ । ଯେଉଁମାନେ ଦେଶର ସ୍ୱାଧୀନତା ପାଇଁ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସେତେବେଳେ କାର୍ଯ୍ୟକରି ଯାଇଛନ୍ତି ସେମାନେ ଚିରଦିନ ଓଡ଼ିଆ ଜାତିର ନମସ୍ୟ ହୋ... ରହିବେ ।

ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠନ କରାଯି... ଦିଗରେ ଭୁବନାନନ୍ଦ ବାବୁ ସେତେବେଳେ ପାର୍ଲାମେଣ୍ଟ... ଏକ ବିଲ୍ ଆଗତ କରିଥିଲେ । ଫଳରେ ଫିଲିପସ୍ ସାହେ... କମିଟି ଗଠିତ ହେଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠି... ହେବାର ପୂର୍ବାଭାସ ହେଉଛି ଫିଲିପସ୍ ସାହେବ କମିଟି... ଭୁବନାନନ୍ଦ ବାବୁଙ୍କ ଆନ୍ଦୋଳନାତ୍ମକ ପଦକ୍ଷେପ ଫଳ... ଫିଲିପସ୍ ସାହେବ କମିଟିର କାର୍ଯ୍ୟ ଆରମ୍ଭ ହୋଇଥିଲା । କେବଳ ସେତିକି ନୁହେଁ ଓଡ଼ିଶା ପ୍ରଦେଶ ଗଠନର ଶେ... ପର୍ଯ୍ୟାୟ ପର୍ଯ୍ୟନ୍ତ ସେ ନିଜକୁ ସେଥିରେ ସାମିଲ୍ କରିଥିଲେ । ଗୋଲଟେବୁଲ ବୈଠକ ସମୟରେ, ଯେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବ କି ନାହିଁ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେଲେ ସେ-ପ୍ରଦେଶ ଭିତରେ କେଉଁ କେଉଁ ଅଞ୍ଚଳ ଅନ୍ତର୍ଭୁକ୍ତ ରହିବ—ଇତ୍ୟାଦି ସମସ୍ୟାର ଆଲୋଚନା ହେଲାବେଳେ ପାରଳାଖେମୁଣ୍ଡି ମହାରାଜାଙ୍କ ସହିତ ସେ ସେଠାରେ ଉପସ୍ଥିତ ରହିଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରିପ୍ରେକ୍ଷୀରେ ଆଜି ଯେଉଁ ବରେଣ୍ୟ ବ୍ୟକ୍ତିମାନେ ଚିରଦିନ ପାଇଁ ଓଡ଼ିଆ ଜାତିର ମନରେ, ଧ୍ୟାନରେ ଓ ହୃଦୟରେ ରହିବେ ତାଙ୍କ ଭିତରେ ଭୁବନାନନ୍ଦ ବାବୁ ଅନ୍ୟତମ ।

ଓଡ଼ିଶାର ଜଣେ ଯୋଗ୍ୟ ସନ୍ତାନ ଭାବରେ ସର୍ବଭାରତୀୟକ୍ଷେତ୍ରରେ ଭୁବନାନନ୍ଦ ବିଶେଷଭାବେ ସମ୍ମାନ ଲାଭ କରିଥିଲେ । ମୋତିଲାଲ ନେହେରୁଙ୍କ ସହିତ ଜବାହରଲାଲ ନେହେରୁ, ଲାଲବାହାଦୂର ଶାସ୍ତ୍ରୀ ଏବଂ ହୃଦୟନାଥ କୁଞ୍ଜୁରୁ ଏ ସମସ୍ତଙ୍କ ସହିତ ତାଙ୍କର ସଖ୍ୟ ଓ ବନ୍ଧୁତା ନିବିଡ ଥିଲା । ତାଙ୍କର ଶେଷକୃତ୍ୟ ସମୟରେ ନିଜେ ପଣ୍ଡିତଜୀ ଉପସ୍ଥିତ ଥିଲେ । ଶାସ୍ତ୍ରୀଜୀ ତାଙ୍କର ଶବ ବାହକ ଭାବରେ ଯୋଗ ଦେଇଥିଲେ । ଆଜି ଏସବୁ ଇତିହାସର ବସ୍ତୁ ହେଲେ ମଧ୍ୟ ଆମ ସଭିଙ୍କର ସ୍ମରଣୀୟ ।

## ସ୍ୱାମୀ ବିଚିତ୍ରାନନ୍ଦ

ସେହିପରି, ସ୍ୱାମୀ ବିଚିତ୍ରାନନ୍ଦ ଦାସ ଦେଶର ସ୍ୱାଧୀନତା ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ କାର୍ଯ୍ୟ କରିଥିଲେ । ସେ ମଧୁବାବୁଙ୍କର ପ୍ରିୟ ଶିଷ୍ୟ ଥିଲେ ଏବଂ ଜୀବନସାରା ତାଙ୍କୁ ହିଁ ଅନୁସରଣ କରିଥିଲେ । ତାଙ୍କ ସହିତ ଯେଉଁମାନେ ଆଲୋଚନା କରିଛନ୍ତି ସେ ସବୁବେଳେ ମଧୁବାବୁଙ୍କ କଥା କହନ୍ତି । ମଧୁବାବୁ କିପରି ଓଡ଼ିଆ ଜାତି ପାଇଁ ସର୍ବସ୍ୱ ଅର୍ପଣ କରିଥିଲେ ଏବଂ ତାଙ୍କ ଜୀବନରେ ସେ କିପରି ସବୁଠାରୁ ପ୍ରେରଣାଦାୟକ ଶକ୍ତି ଥିଲେ ସେହିକଥା ସେ ସବୁବେଳେ କହିଛନ୍ତି । ସ୍ୱାଧୀନତା ପୂର୍ବରୁ ଯେତେବେଳେ ପାରଳାଖେମୁଣ୍ଡି ମହାରାଜା ଗୋଦାବରୀଶ ବାବୁ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ ସେତେବେଳେ ସେ ବିରୋଧୀ ଦଳର ନେତା ଭାବେ କାର୍ଯ୍ୟ କରୁଥିଲେ । ବିରୋଧୀ ଦଳର ନେତା ଭାବରେ ସେ ତାଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ସୁଚାରୁ ରୂପେ ସଂପନ୍ନ କରିଥିଲେ ।

ସ୍ୱାଧୀନତା ପୂର୍ବରୁ ଏବଂ ପରେ ତାଙ୍କର ଜୀବନ ଥିଲା ଏକ ସମର୍ପିତ ଜୀବନ । ତାଙ୍କୁ ସମସ୍ତେ ସ୍ୱାମୀଜୀ ବୋଲି କହୁଥିଲେ । ତାଙ୍କର ସ୍ତ୍ରୀଙ୍କର ମୃତ୍ୟୁ ପରେ ସେ ସନ୍ୟାସୀ ପରି ଜୀବନ ଯାପନ କରୁଥିଲେ । ସେଥିପାଇଁ ତାହାଙ୍କୁ ସ୍ୱାମୀଜୀ କୁହାଯାଉଥିଲା । ତାଙ୍କର ଯାହା କିଛି ଆୟ ଥିଲା, ଯେଉଁ ମନ ଓ ଉତ୍ସାହ ଥିଲା, ସେ ସବୁକୁ ଦେଶ ପାଇଁ ଜାତି ପାଇଁ ନିୟୋଜିତ କରି ଆତ୍ମତୃପ୍ତି ଅନୁଭବ କରୁଥିଲେ । ତାଙ୍କର ଦୀର୍ଘ ଜୀବନ କାଳ ଭିତରେ ରାଷ୍ଟ୍ରଭାଷା ସେବା, ଅନାଥାଶ୍ରମ ପ୍ରତିଷ୍ଠା ଏବଂ ଅନ୍ୟାନ୍ୟ ବହୁ କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରିଥିଲେ । ମୁଁ ବହୁକାଳ ଧରି ତାଙ୍କ ସମ୍ପର୍କରେ ଆସିଛି । ତାଙ୍କ ହୃଦୟର ଅନାବିଳ ସ୍ନେହ, ଓଡ଼ିଆ ଜାତି ପ୍ରତି ତାଙ୍କର ଶ୍ରଦ୍ଧା ଏସବୁ ମୋର ମନେ ପଡୁଛି । ଆମମାନଙ୍କର ସୌଭାଗ୍ୟ ଏହିଭଳି ଦୁଇଜଣ ସୁପୁରୁଷ ଭାରତବର୍ଷର ସନ୍ଧିକ୍ଷଣରେ ଓଡ଼ିଶାରେ ଜନ୍ମ ହୋଇଥିଲେ ।

ଆଜି ତାଙ୍କର ଶତବାର୍ଷିକୀ ଉତ୍ସବ । ଆମର ମନ ଏବଂ ହୃଦୟ ଭିତରେ ସେ ସବୁ ସମୟ ପାଇଁ ଯେପରି ଜୀବିତ ରହି ପାରିବେ ଆମେ ସେହିଭଳି କାର୍ଯ୍ୟକ୍ରମ ଗ୍ରହଣ କରିବା । ଦାରିଦ୍ର୍ୟ ଦୂର କରି ଓଡ଼ିଶାକୁ ଭାରତବର୍ଷର ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ଆମର ସ୍ୱପ୍ନ ହେବା ଦରକାର । ଏହା ହିଁ ହେବ ତାଙ୍କ ପ୍ରତି ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

(ମେଇ ୧୪ ତାରିଖରେ ସୂଚନା ଭବନରେ ପ୍ରଦତ୍ତ ଅଭିଭାଷଣରୁ)





# ସପ୍ତମ ଯୋଜନାରେ କୃଷି



ଶ୍ରୀ ଶରତଚନ୍ଦ୍ର ପଣ୍ଡା

ଆମ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ସଂପୂର୍ଣ୍ଣଭାବେ କୃଷିଭିତ୍ତିକ । ରାଜ୍ୟର ମୋଟ ଆୟର ଶତକଡ଼ା ୬୬ ଭାଗ କୃଷିଭୂମିରେ ଓ ଶ୍ରମଜୀବୀମାନଙ୍କ ମଧ୍ୟରୁ ଶତକଡ଼ା ୭୫ ଭାଗ ଲୋକ ପରୋକ୍ଷ ବା ପ୍ରତ୍ୟକ୍ଷଭାବେ କୃଷି ଉପରେ ନିର୍ଭର କରି ଜୀବିକାର୍ଜ୍ଜନ କରନ୍ତି । ଅତଏବ କୃଷି ଉନ୍ନତିକୁ ଆମର ଅର୍ଥନୈତିକ ଉନ୍ନତି ବୋଲି ବୁଝିବାକୁ ହେବ । ଏହି ଦୃଷ୍ଟିକୋଣରୁ ସରକାର ଅଗ୍ରାଧିକାର ଭିତ୍ତିରେ କୃଷି ଉନ୍ନୟନ ପାଇଁ ବ୍ୟାପକ ପଦକ୍ଷେପ ନେଉଛନ୍ତି । ଆଗାମୀ ସପ୍ତମ ଯୋଜନା କାଳ ମଧ୍ୟରେ କୃଷିଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯିବ ବୋଲି ସରକାରୀ ସ୍ତରରେ ସ୍ଥିର କରାଯାଇଛି । ୧୯୮୦ ରୁ ୧୯୮୫ ମସିହା ମଧ୍ୟରେ ରାଜ୍ୟର କୃଷିକ୍ଷେତ୍ରରେ ଯେଉଁ ସବୁଜ ବିପ୍ଳବର ଶୁଭ ଦିଆଯାଇଛି, ତାହା ଆଗାମୀ ପାଞ୍ଚବର୍ଷ ମଧ୍ୟରେ ପୂର୍ଣ୍ଣ କରାଯିବାର ଲକ୍ଷ୍ୟ ରଖାଯାଇଛି । ଏଥିଲାଗି ଖାଦ୍ୟ ଉତ୍ପାଦନ ବୃଦ୍ଧିଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ବିଗତ ପାଞ୍ଚବର୍ଷ ମଧ୍ୟରେ ରାଜ୍ୟରେ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଚମକପ୍ରଦ ଅଭିବୃଦ୍ଧି ଘଟିଛି ଓ ୧୯୯୦ ମସିହା ସୁଦ୍ଧା ଯେପରି ଆହୁରି ୧୫ ଲକ୍ଷଟନ୍ ବଳକା ଖାଦ୍ୟଶସ୍ୟ ଉତ୍ପାଦନ ହୋଇପାରିବ ସେଥିପାଇଁ ସମସ୍ତ ସମ୍ଭାବ୍ୟ ପଦକ୍ଷେପ ନିଆ-ଯାଉଛି । ପ୍ରଥମ ଥରପାଇଁ ରାଜ୍ୟରେ ଶିଳ୍ପ ଓ କୃଷି କ୍ଷେତ୍ରରେ ସମନ୍ୱୟଘଟାଇ କୃଷିଭିତ୍ତିକ ଶିଳ୍ପସ୍ଥାପନ ପାଇଁ ସବୁମତେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ବଡ଼ମ୍ବା ଓ ନୟାଗଡ଼ରେ ଦୁଇଟି ନୂଆ ଚିନିକଳ ସ୍ଥାପନ କରାଯାଇଛି ଓ ରାଜ୍ୟରେ ସୂତାକଳ, ଝୋଟକଳ ଓ ତେଲକଳ ଇତ୍ୟାଦି କୃଷିଉପରେ ନିର୍ଭର କରୁ[...] ଶିଳ୍ପ ସବୁ ସ୍ଥାପନ କରାଯିବାର ବିହିତ ବ୍ୟବସ୍ଥା ଗ୍ରହଣ କରାଯା[...] କୃଷକମାନଙ୍କୁ ପ୍ରାକୃତିକ ବିପର୍ଯ୍ୟୟଜନିତ କ୍ଷୟ କ୍ଷତିରୁ ରକ୍ଷା କ[...] ପାଇଁ ଶସ୍ୟବୀମା ପ୍ରବର୍ତ୍ତନ, କୃଷକ ପରିବାରମାନଙ୍କୁ ସମ[...] ପରିସରଭୁକ୍ତ, ହେକ୍ଟର ପିଛା ସାର ବ୍ୟବହାର ପରିମ[...] ବୃଦ୍ଧି ଇତ୍ୟାଦି ଆଗୁଆ ଯୋଜନାମାନ ସରକାର ହାତକୁ ନେଇଛ[...] ଆଗାମୀ ୫ ବର୍ଷମଧ୍ୟରେ ଜଳସେଚନ ଉପରେ ସର୍ବାଧି[...] ଗୁରୁତ୍ୱ ଦିଆଯିବ ବୋଲି ସରକାରୀ ସ୍ତରରେ ସ୍ଥିରକରାଯା[...] ପ୍ରତ୍ୟେକ ବ୍ଲକରେ ୫୦୦ରୁ ୧,୦୦୦ ଏକର ଅଧିକ ଜମି[...] ଜଳସେଚିତ କରାଯିବା, ଏପରିକି ଆଉ ଅଧିକ ୮ ଲ[...] ହେକ୍ଟର ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯିବା[...] ଲକ୍ଷ୍ୟ ରଖାଯାଇଛି ।

ରାଜ୍ୟର ମୁଖ୍ୟ ଫସଲ ଧାନ । ଖରିଫ ଓ ରବିଋତୁରେ ବାର୍ଷିକ ମୋଟ ୪.୩ ନିୟୁତ ହେକ୍ଟର ଜମିରେ ଏହା ଚାଷ କରାଯାଏ ଓ ବାର୍ଷିକ ୫.୧ ନିୟୁତ ମେଟ୍ରିକ ଟନ୍ ଚାଉଳ ଅମଳ କରାଯାଏ । ଅର୍ଥାତ୍ ହେକ୍ଟର ପ୍ରତି ଚାଉଳ-ଅମଳ ପରିମାଣ ୧୧ କୁଇଣ୍ଟାଲ ୯୪ କେ. ଜି. (୧୯୮୩-୮୪) ।

ପୂର୍ବାଞ୍ଚଳ ରାଜ୍ୟମାନଙ୍କଠାରୁ ଧାନଉତ୍ପାଦନ କ୍ଷେତ୍ରରେ ଅଧିକ ସଫଳତା ହାସଲ କରିବା ପାଇଁ ଗତ ଖରିଫ ଋତୁଠାରୁ ଆମରାଜ୍ୟର ୭ଟି ବଛା ବଛା ବ୍ଲକରେ ସମନ୍ୱିତ ଧାନ ଉତ୍ପାଦନ ଯୋଜନା କାର୍ଯ୍ୟକାରୀ କରାଯାଇଛି । ଚଳିତ ବର୍ଷ ଏହି କାର୍ଯ୍ୟକ୍ରମକୁ ରାଜ୍ୟର ଆହୁରି ୬୩ଟି ବ୍ଲକକୁ ସଂପ୍ରସାରିତ କରାଯାଉଛି । ସେହିଭଳି ଇଟାଲି ସରକାରଙ୍କ ସହାୟତାରେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ୮ଟି ବ୍ଲକରେ ମଧ୍ୟ ଧାନଚାଷର ଉନ୍ନତି ପାଇଁ ଯୋଜନା କାର୍ଯ୍ୟକାରୀ କରାଯିବ । ଏହାକୁ ଆହୁରି ଫଳପ୍ରଦ କରିବା ପାଇଁ ବର୍ତ୍ତମାନ ସରକାର ପରୀକ୍ଷାମୂଳକ ଭାବେ ରାଜ୍ୟର କେତେକ ବ୍ଲକରେ 'ଫସଲବୀମା' ଯୋଜନା କାର୍ଯ୍ୟକାରୀ କରିବେ ।

ଜମିର ଉତ୍ପାଦିକାଶକ୍ତି ବୃଦ୍ଧି କରିବା ପାଇଁ ଖତ ଓ ସାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୂର୍ବରୁ ଆମ ରାଜ୍ୟରେ ହେକ୍ଟର ପିଛା ୧୦ କେ.ଜି. ହିସାବରେ ସାର ବ୍ୟବହୃତ ହେଉଥିଲା । ଅଧିକ ଅମଳ ଉଦ୍ଦେଶ୍ୟରେ ଚଳିତ ବର୍ଷଠାରୁ ହେକ୍ଟର ପିଛା ୧୫ କେ. ଜି. ହିସାବରେ ସାର ବ୍ୟବହାର କରିବାକୁ ସରକାରୀ ସ୍ତରରେ ନିଷ୍ପତ୍ତି ହୋଇଛି ଓ ଆଗାମୀ ସପ୍ତମ ଯୋଜନା ଶେଷ ସୁଦ୍ଧା ହେକ୍ଟର ପିଛା ସାର ବ୍ୟବହାର ପରିମାଣ ୩୦ କିଲୋଗ୍ରାମକୁ ବୃଦ୍ଧି କରାଯିବବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହାଦ୍ୱାରା ଆମର ଅମଳ ଶତକଡ଼ା ୪୦ ଭାଗ ବୃଦ୍ଧି ପାଇବ ବୋଲି ଆଶା ।

ଧାନ ଅଧିକ ପାଣି ଦରକାର କରୁଥିବାରୁ, ମଝିଆଳି ଓ ଗୋଇଜମିରେ ଅଧିକ ଅମଳକ୍ଷମ ଧାନଚାଷକରି ଟିପ ଜମିରେ ଡାଲି, ତୈଳବୀଜ, କପା, ଆଖୁ ଇତ୍ୟାଦି ଫସଲ ଚାଷକୁ ଉତ୍ସାହିତ କରାଯିବ । ଉପକୂଳର ସମତଳ ବିଆଳି ଜମିରେ ଧାନ-ହରଡ଼, ଧାନ-ଚିନାବାଦାମ, ଇତ୍ୟାଦି ମିଶ୍ରିତ ଫସଲ ଚାଷ କରାଯିବ । ସପ୍ତମ ଯୋଜନା କାଳରେ ଧାନ ତଥା ଅନ୍ୟାନ୍ୟ ଖାଦ୍ୟଶସ୍ୟର ଅମଳ ବଢ଼ାଇ, ଯୋଜନା ଶେଷ ବେଳକୁ ବାର୍ଷିକ ୮୫ ଲକ୍ଷଟନ୍



ଅଧିକ ଅମଳକ୍ଷମ ଧାନ କ୍ଷେତ୍ର .......

ଖାଦ୍ୟଶସ୍ୟ ଉତ୍ପାଦନ ପାଇଁ ମୁଖ୍ୟତଃ ନିମ୍ନଲିଖିତ ପଦକ୍ଷେପ ନିଆଯାଇଛି—

(କ) ହେକ୍ଟର ପ୍ରତି ସାର ବ୍ୟବହାର ପରିମାଣ ୧୩'୧୫ କେ. ଜି.ରୁ ୩୦'୦୬ କେ. ଜି.କୁ ବୃଦ୍ଧି କରାଯିବ ।

(ଖ) ଅଧିକ ୧୧ ଲକ୍ଷ ହେକ୍ଟର ଜମିକୁ ସ୍ଥାୟୀ ଜଳ-ସେଚନ ବ୍ୟବସ୍ଥା ଯୋଗାଇ ଦିଆଯିବ ।

(ଗ) ଖରିଫ ଓ ରବିଋତୁରେ ଅଧିକ ୬'୦୩ ଲକ୍ଷ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଧାନ ଚାଷ କରାଯିବ । ୧୯୮୪-୮୫ ସୁଦ୍ଧା ଖରିଫ ଓ ରବିଋତୁରେ ମୋଟ ୧୪'୫ ଲକ୍ଷ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଧାନଚାଷ କରାଯାଇଛି ।

ଉନ୍ନତ ଓ ପରୀକ୍ଷିତ ବିହନ ବ୍ୟବହାରକୁ ଅଧିକ ବ୍ୟାପକ କରିବା ପାଇଁ ବିହନଗୁଡ଼ିକ ରିହାତି ଦରରେ ଚାଷୀଙ୍କୁ ଯୋଗାଇ ଦେବା ସହିତ, ପ୍ରତିଗ୍ରାମକୁ ଉନ୍ନତ ବିହନର ମିନିକିଟ୍ ଯୋଗାଇ ଦିଆଯିବ । ପ୍ରତ୍ୟେକ ବ୍ଲକ୍ ସଦର ମହକୁମାରେ ଚାଷିଙ୍କୁ ବିହନ ବିକ୍ରିପାଇଁ ବ୍ୟବସ୍ଥା କରାଯାଇଛି ।

ଓଡ଼ିଶା ରାଜ୍ୟ ବିହନ ନିଗମ ଓ ସମବାୟ ସମିତି ମାଧ୍ୟମରେ ଅଧିକ ବିହନ ବିକ୍ରୟ କେନ୍ଦ୍ର ଖୋଲିବା ପାଇଁ ବର୍ତ୍ତମାନ ଏହି ସଂସ୍ଥାମାନଙ୍କୁ ପରିବହନ ରିହାତି ଯୋଗାଇବା ପାଇଁ ସରକାର ସ୍ଥିର କରୁଛନ୍ତି ।

ବର୍ତ୍ତମାନ ସମବାୟ ସମିତି ଓ ବେସରକାରୀ ସଂସ୍ଥା-ଗୁଡ଼ିକ ମାଧ୍ୟମରେ ସାର ବିକ୍ରୀପାଇଁ ୭୦୦୦ ବିକ୍ରୟ କେନ୍ଦ୍ର ଖୋଲାଯାଇଛି । ମାତ୍ର ରାଜ୍ୟର ପ୍ରତି ୫ଟି ଗ୍ରାମ ପାଇଁ ଗୋଟିଏ ଲେଖାଏଁ ବିକ୍ରୟ କେନ୍ଦ୍ର ଖୋଲିବା ପାଇଁ ଏବେ ସରକାରୀ ସ୍ତରରେ ସ୍ଥିର ହୋଇଛି । ଅର୍ଥାତ୍ ସାର ବିକ୍ରୟକେନ୍ଦ୍ର ସଂଖ୍ୟା ୭୦୦୦ରୁ ୧୦,୦୦୦ କୁ ବୃଦ୍ଧି କରାଯିବ ।

ରାଜ୍ୟର ଦ୍ୱିତୀୟ ମୁଖ୍ୟ ଫସଲ ଡାଲି । ବାର୍ଷିକ ୨ ନିୟୁତ ହେକ୍ଟର ଜମିରେ ଡାଲି ଫସଲ ଚାଷ କରାଯାଇ ମୋଟ ୧ ନିୟୁତ ଟନ୍ (ହେକ୍ଟର ପ୍ରତି ହାରାହାରି ଅମଳ ୫'୨ କୁଇଣ୍ଟାଲ) ଡାଲି ଅମଳ କରାଯାଉଛି । ୧୯୮୫-୮୬ ମସିହାରୁ ଡାଲି ଫସଲର ଉତ୍ପାଦନ ବୃଦ୍ଧିପାଇଁ କେନ୍ଦ୍ର ସରକାରଙ୍କ ସହାୟତାରେ ମୋଟ ୧'୫୫ କୋଟି ଟଙ୍କା ବ୍ୟୟରେ ଏକ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରାଯିବ ।

ସପ୍ତମ ଯୋଜନା ଶେଷ ବେଳକୁ ମୋଟ ବାର୍ଷିକ ତୈଳ-ବୀଜ ଉତ୍ପାଦନ ୧୦ ଲକ୍ଷ ଟନ୍‌କୁ ବୃଦ୍ଧି ପାଇବ । ଏହା ବର୍ତ୍ତମାନ ବାର୍ଷିକ ୭'୮୩ ଲକ୍ଷଟନ୍‌ରେ ପହଞ୍ଚିଛି । ତୈଳବୀଜ ଉତ୍ପାଦନ ବୃଦ୍ଧି ପାଇଁ ମଧ୍ୟ ଏକ କେନ୍ଦ୍ରୀୟ ସାହାଯ୍ୟପ୍ରାପ୍ତ ଯୋଜନା ରାଜ୍ୟରେ କାର୍ଯ୍ୟକାରୀ କରାଯିବ ।

ନଡ଼ିଆ, ମେସ୍ତା ଏବଂ କପା ରାଜ୍ୟର ତିନୋଟି ମୁଖ୍ୟ ତନ୍ତୁଜାତୀୟ ଫସଲ । ୧୯୮୪-୮୫ ଶେଷ ସୁଦ୍ଧା ରାଜ୍ୟରେ ବାର୍ଷିକ ୭'୫ ହଜାର ଗାଣ୍ଠି ତନ୍ତୁ ଉତ୍ପାଦନ କରାଯାଇ ପାରିଛି । ସପ୍ତମ ଯୋଜନା ଶେଷ ... ଏହି ଉତ୍ପାଦନ ବୃଦ୍ଧି କରିବାପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଛି

ରାଜ୍ୟର ୫ଟି ଚିହ୍ନି... ଅଞ୍ଚଳକୁ କେନ୍ଦ୍ରକରି ଆଖୁଚାଷକୁ ସଂପ୍ରସାରିତ କରାଯିବ ... ହେକ୍ଟର ପିଛା ଆଖୁ ଉତ୍ପାଦନ ବୃଦ୍ଧିକରିବା ନିମନ୍ତେ ବିଶେଷ ପଦକ୍ଷେପ ନିଆଯାଇଛି । ସପ୍ତମ ଯୋଜନା ଶେଷ ସୁଦ୍ଧା ରାଜ୍ୟର ମୋଟ ଗୁଡ଼ ଉତ୍ପାଦନ ପରିମାଣକୁ ବାର୍ଷିକ ୩'୬୬ ଲକ୍ଷ ଟନ୍‌ରୁ ୪'୧୯ ଲକ୍ଷ ଟନ୍‌କୁ ବୃଦ୍ଧି କରିବା ପାଇଁ ପଦକ୍ଷେପ ନିଆଯାଇଛି ।

## ମୃତ୍ତିକା ସଂରକ୍ଷଣ ବର୍ତ୍ତଗ

ମୃତ୍ତିକା ସଂରକ୍ଷଣ ବିଭାଗ, ରାଜ୍ୟର କ୍ଷୟ ହୋଇ ଯାଉଥିବା ମୃତ୍ତିକାର ସଂରକ୍ଷଣ ପାଇଁ ନାନାବିଧ ଉପାୟମାନ ଅବଲମ୍ବନ କରିବା ସଙ୍ଗେ ସଙ୍ଗେ, ମୃତ୍ତିକାର ଭୌତିକ ଉନ୍ନତି ପାଇଁ ବୃକ୍ଷରୋପଣ, ଜଳସଂରକ୍ଷଣ ସେତୁ ଏବଂ ଭୂ-ଉନ୍ନୟନ ଇତ୍ୟାଦି କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

ଷଷ୍ଠ ଯୋଜନା କାଳରେ (୧୯୮୦-୮୧ରୁ ୧୯୮୪-୮୫) ଏହି ବିଭାଗ ଦ୍ୱାରା ୪୩,୭୭୧ ହେକ୍ଟର ଜମିରେ କାଜୁବାଦାମ



ଉନ୍ନତ ଧରଣର ଡାଲି ଜାତୀୟ ଫସଲ ........

ଏବଂ ଅନ୍ୟାନ୍ୟ ବୃକ୍ଷରୋପଣ କରାଯାଇଛି । ୧୬,୮୧୭ ହେକ୍ଟର ଜମିର ଉନ୍ନତି ସାଧନ କରି, ଚାଷୋପଯୋଗୀ କରିବା ସଙ୍ଗେ ସଙ୍ଗେ ୪,୮୪୯ଟି ଜଳ ସଂରକ୍ଷଣ ସେତୁ ନିର୍ମାଣ କରି, ନଷ୍ଟ ହୋଇଯାଉଥିବା ବଳକା ଜଳକୁ ବାନ୍ଧିରଖିବା ଦ୍ୱାରା ଚାଷ-କାର୍ଯ୍ୟରେ ଉପଯୋଗ କରିବାରେ ସାହାଯ୍ୟ କରାଯାଇ ପାରିଛି, ଏହାବ୍ୟତୀତ ୭୫୫ କିଲୋମିଟର ଦୈର୍ଘ୍ୟ ନଦୀକୂଳର କ୍ଷୟ ହେଉଥିବା ମୃତ୍ତିକାର ମଧ୍ୟ ସଂରକ୍ଷଣ କରାଯାଇ ପାରିଛି । ଏହାଫଳରେ, ଭୂମିହୀନ ଗରିବ ଲୋକଙ୍କୁ କାମ ଯୋଗାଇ ଦେବା ସଙ୍ଗେ ସଙ୍ଗେ କୃଷିଉତ୍ପାଦନ ବୃଦ୍ଧିପାଇଛି ଓ କାଜୁବାଦାମ ତଥା ଅନ୍ୟାନ୍ୟ ବୃକ୍ଷରୋପଣରୁ ସରକାରଙ୍କ ତହବିଲକୁ ପର୍ଯ୍ୟାପ୍ତ ପରିମାଣର ଅର୍ଥ ଆୟ କରାଯାଇ ପାରିଛି ।

ସପ୍ତମ ଯୋଜନା କାଳରେ ଅର୍ଥାତ୍ ୧୯୮୫—୯୦ ମସିହା ମଧ୍ୟରେ ମୋଟ ୧,୫୦୦ ଲକ୍ଷ ଟଙ୍କା ବ୍ୟୟ କରାଯାଇ, ନିମ୍ନଲିଖିତ ଲକ୍ଷ୍ୟ ହାସଲ କରାଯିବ ।

(କ) ବୃକ୍ଷରୋପଣ—୪୬,୨୯୨ ହେକ୍ଟର

(ଖ) ଜଳ ସଂରକ୍ଷଣ ସେତୁନିର୍ମାଣ—୯,୦୪୯ ଗୋଟି

(ଗ) ଜମି ଉନ୍ନୟନ—୨୧,୬୫୦ ହେକ୍ଟର

(ଘ) ନଦୀକୂଳ ମୃତ୍ତିକା ସଂରକ୍ଷଣ—୭୨୮ କିଲୋମିଟର

ଉଦ୍ୟାନ ବିଭାଗ—

ରାଜ୍ୟରେ ଫଳ ଏବଂ ପନିପରିବା ଚାଷର ଉନ୍ନତିପାଇଁ ଉଦ୍ୟାନ ବିଭାଗ ଜରିଆରେ ଷଷ୍ଠଯୋଜନାକାଳ ମଧ୍ୟରେ ମୋଟ ୬,୪୯,୫୫ ଲକ୍ଷ ଟଙ୍କା ବ୍ୟୟରେ ନିମ୍ନଲିଖିତ କାର୍ଯ୍ୟ ହାସଲ କରାଯାଇ ପାରିଛି—

(କ) କଦଳୀଗଛ ରୋପଣ .. ୧,୫୩୧'୧୮ ହେକ୍ଟର

(ଖ) ସପୁରୀଗଛ ରୋପଣ .. ୬୨'୮୦ ହେକ୍ଟର

(ଗ) ଅମୃତଭଣ୍ଡା ଗଛ ରୋପଣ .. ୫୬୧'୦୦ ହେକ୍ଟର

(ଘ) ନଡ଼ିଆଚାରା ରୋପଣ .. ୨୯'୯୮ ଲକ୍ଷ

(ଙ) ଲେମ୍ବୁ ଗଛ ରୋପଣ .. ୧୭'୩୮ ଲକ୍ଷ

(ଚ) ଇନ୍‌ସିଟୁ ପ୍ରଣାଳୀରେ ଆମ୍ବବଗିଚ୍ଚ ୪,୨୭୧ ହେକ୍ଟର

(ଛ) ଅନ୍ୟାନ୍ୟ ଫଳଗଛ ରୋପଣ .. ୧୫'୨୧ ଲକ୍ଷ

୧୯୮୪-୮୫ ଶେଷକୁ ବାର୍ଷିକ ୧୬୩,୬୦୦ ଟନ୍ କଦଳୀ, ୩୮,୦୦୦ ଟନ୍ କମଳା, ୪୬,୪୦୦ ଟନ୍ ଆମ୍ବ, ୨୨,୫୦୦ ଟନ୍ ଅମୃତଭଣ୍ଡା, ଅନ୍ୟାନ୍ୟ ଲେମ୍ବୁ ଜାତୀୟ ଫଳ ୧୯,୦୦୦ ଟନ୍ ଏବଂ ୧୨୮,୦୦୦ ଟନ୍ ଅନ୍ୟାନ୍ୟ ଫଳ ଉତ୍ପାଦିତ ହୋଇପାରିଛି । ଏହା ବ୍ୟତୀତ ବାର୍ଷିକ ୪,୧୦୩,୦୦୦ ଟନ୍ ଆଳୁ ଓ ପନିପରିବା ମଧ୍ୟ ଉତ୍ପାଦନ କରାଯାଇ ପାରିଛି ।

ନଡ଼ିଆ ଆମ ରାଜ୍ୟର ଅନ୍ୟତମ ଅର୍ଥକାରୀ ଫଳ । ଏହାର ଉନ୍ନୟନ ଦ୍ୱାରା ବାର୍ଷିକ ୧୦୩ ନିୟୁତ ନଡ଼ିଆ ମଧ୍ୟ ଅମଳ କରାଯାଇ ପାରୁଛି ।

ସପ୍ତମ ଯୋଜନା କାଳରେ ରାଜ୍ୟର ଫଳଚାଷ ଜମିର ଆୟତନ ଓ ଉତ୍ପାଦନ ବୃଦ୍ଧି, ଫଳ ଓ ପନିପରିବା ସଂରକ୍ଷଣ ତଥା ବିକ୍ରୀବଟା ଏବଂ ଉନ୍ନତ ଫଳଚାଷ ପ୍ରଣାଳୀର ବ୍ୟାପକ ପ୍ରସାର ଉପରେ ଗୁରୁତ୍ୱ ଦିଆଯିବ ।

ଏହି ଯୋଜନା କାଳରେ ଅଧିକ ୪ ଲକ୍ଷ ହାଇବ୍ରିଡ୍ ନଡ଼ିଆ ଚାରା ରୋପଣ, ୪ହଜାର ହେକ୍ଟର ଜମିରେ କମଳା ଓ ଜାତେଲି ଲେମ୍ବୁ ଚାଷ, ୫ହଜାର ହେକ୍ଟର ଜମିରେ ଆମ୍ବ ବଗିଚା ସ୍ଥାପନ, ୩ ହଜାର ହେକ୍ଟର ଜମିରେ କଦଳୀପୁଆ ରୋପଣ, ୫୦୦ ହେକ୍ଟର ଜମିରେ ସପୁରୀଚାଷ ଓ ୧୦ ହଜାର ହେକ୍ଟର ଜମିରେ ଅନ୍ୟାନ୍ୟ ଫଳ ଯଥା—ଅମୃତଭଣ୍ଡା, ପିଜୁଳି, ସପେଟା, ଲିଚୁ, ପଣସ, ଡାଳିମ୍ବ, ବେଲ ଏବଂ ବରକୋଳି ଚାରାର ଇତ୍ୟାଦି ଲଗାଯିବ ।

ଏହିଭଳି ଏକ ବ୍ୟାପକ କାର୍ଯ୍ୟକ୍ରମ ପାଇଁ ଚାରା ଯୋଗାଇ ଦେବା ନିମିତ୍ତ, ବର୍ତ୍ତମାନ ରାଜ୍ୟରେ ଥିବା ୪୮ଟି ଫଳବଗିଚା



ଅଧିକ ଅମଳକ୍ଷମ ଚିନାବାଦାମ

୨୭ଟି ନଡ଼ିଆଗଛରା ଉତ୍ପାଦନ କେନ୍ଦ୍ର, ୧୨ଟି କଦଳୀପୁଆ ଓ ୧୧ଟି ସପୁରୀପୁଆ ଉତ୍ପାଦନ କେନ୍ଦ୍ର ସାଙ୍ଗକୁ ୭ମ ଯୋଜନା କାଳରେ ଆଉ ୧୦ଟି ବିଭିନ୍ନ ଫଳଗଛରା ଉତ୍ପାଦନ କେନ୍ଦ୍ର ଖୋଲାଯିବ । ଏହି କେନ୍ଦ୍ରମାନଙ୍କରୁ ୨୬ଲକ୍ଷ ନଡ଼ିଆଗଛରା, ୫୦ଲକ୍ଷ କମଳା, ୫ଲକ୍ଷ କଦଳୀ ପୁଆ, ୫ଲକ୍ଷ ସପୁରୀପୁଆ ଏବଂ ୨୫ଲକ୍ଷ ଅନ୍ୟାନ୍ୟ ଫଳଗଛର ଗଛରା ଉତ୍ପାଦନ କରି ଚାଷୀମାନଙ୍କୁ ଯୋଗାଇ ଦିଆଯିବ । ଫଳଚାଷ ପାଇଁ ଆଦିବାସୀ ଓ ହରିଜନ ଚାଷୀମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦେବାର ବ୍ୟବସ୍ଥା ମଧ୍ୟ କରାଯାଉଛି ।

ଫଳଚାଷର ଉନ୍ନତି ସାଙ୍ଗକୁ, ସପ୍ତମ ଯୋଜନା କାଳରେ ବାର୍ଷିକ ୬୦ ହଜାର ହେକ୍ଟର ଜମିରେ ଆଳୁ ଓ ୧,୫୦,୦୦୦ ହେକ୍ଟର ଜମିରେ ଅନ୍ୟାନ୍ୟ ପନିପରିବା ଚାଷପାଇଁ ଲକ୍ଷ୍ୟ ରଖାଯାଇଛି ।

ଛତୁଚାଷ ଆମ ରାଜ୍ୟରେ ନୂଆ । ଏହାର ପ୍ରସାର ପାଇଁ ରାଜ୍ୟରେ ୧୦ଟି ଛତୁବିହନ ଉତ୍ପାଦନ କେନ୍ଦ୍ର ମଧ୍ୟ ପ୍ରତିଷ୍ଠା କରାଯିବ । ସହରାଞ୍ଚଳର ପନିପରିବା ଅଭାବ ମେଣ୍ଟାଇବା ପାଇଁ ୨୦ଟି ନୂଆ କିଚିନ୍ ଗାର୍ଡେନ ମଧ୍ୟ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ରଖାଯାଇଛି ।

ଫଳ ଏବଂ ପନିପରିବା ସଂରକ୍ଷଣ ବ୍ୟବସ୍ଥାକୁ ଅଧିକ ବ୍ୟାପକ କରିବା ଉଦ୍ଦେଶ୍ୟରେ ବର୍ତ୍ତମାନ ରାଜ୍ୟରେ ଥିବା ୧୩ଟି ସଂରକ୍ଷଣ କେନ୍ଦ୍ର ସାଙ୍ଗକୁ ଅଧିକ ୫୦ଟି କେନ୍ଦ୍ର ଖୋଲଯିବ । ଏହାବାଦ୍, ରାଜ୍ୟର ଦୁଇଟି ଯାକ ଫଳ ସଂରକ୍ଷଣ କାରଖାନାକୁ ମଧ୍ୟ ଆଧୁନିକୀକରଣ କରାଯାଉଛି ।

ଫଳ ଓ ପନିପରିବା ଚାଷକୁ ଏକ ନୂତନ ଦିଗ୍‌ଦର୍ଶନ ଦେବାପାଇଁ ୭ମ ଯୋଜନା ସମୟ ମଧ୍ୟରେ ରାଜ୍ୟ ସରକାର ନିମ୍ନଲିଖିତ ନୂଆ କାର୍ଯ୍ୟକ୍ରମଗୁଡ଼ିକ ହାତକୁ ନେବାଲାଗି ନିଷ୍ପତ୍ତି କରିଛନ୍ତି ।

(କ) ଉନ୍ନତ ଗଛ ଉତ୍ପାଦନ ପାଇଁ, ଟିସୁଚାଷ କେନ୍ଦ୍ର ପ୍ରତିଷ୍ଠା

(ଖ) ମୂଳ ଜାତୀୟ ପନିପରିବା ଏବଂ ମସଲାଚାଷର ଉନ୍ନତ ଚାଷ ପ୍ରଣାଳୀ ଓ ବିହନ ଉତ୍ପାଦନ ପାଇଁ ଦୁଇଟି ନୂଆ ଗବେଷଣା କେନ୍ଦ୍ର ସ୍ଥାପନ ।

(ଗ) ପୁଷ୍ପ ଚାଷର ଉନ୍ନତି ପାଇଁ ପୁଷ୍ପଚାଷ ଉନ୍ନୟନ କାର୍ଯ୍ୟକ୍ରମ ।

(ଘ) ଔଷଧ ଓ ସୁଗନ୍ଧୀ ବୃକ୍ଷର ଚାଷପାଇଁ କ୍ଷେତ୍ର ପ୍ରଦର୍ଶନ କାର୍ଯ୍ୟକ୍ରମ ।

(ଙ) ପୋଡୁଚାଷ ଅଞ୍ଚଳରେ ଫଳଚାଷ ଉନ୍ନୟନ କାର୍ଯ୍ୟକ୍ରମ ।

## କ୍ଷୁଦ୍ର ଜଳସେଚନ (ପ୍ରବାହ)

(୧) ଏହି ରାଜ୍ୟରେ କ୍ଷୁଦ୍ର ଜଳସେଚନ ଯୋଜନା ଦ୍ୱାରା ୧୦'୮୬ ଲକ୍ଷ ହେକ୍ଟର ଜମିରେ ଜଳସେଚନ ବିକାଶର ସମ୍ଭାବନା ରହିଛି । (୮'୮ ଲକ୍ଷ ହେକ୍ଟର ଖରିଫ୍ ଓ ୨'୦୬ ହେକ୍ଟର ରବି) ଷଷ୍ଠ ପଞ୍ଚବାର୍ଷିକ ଯୋଜନାର ଶେଷ ସୁଦ୍ଧା ୩୬୫,୭୦୬ ହେକ୍ଟର ଜମିରେ ଜଳସେଚନର ସୁବିଧା କରାଯାଇଛି । ଯାହାକି ଉପରୋକ୍ତ ଲକ୍ଷ୍ୟର ଶତକଡ଼ା ୩୪ ଭାଗ ଅଟେ । ଏଣୁ ଏହି ରାଜ୍ୟରେ କ୍ଷୁଦ୍ର ଜଳସେଚନର ଉନ୍ନତି ଓ ବିକାଶ ପାଇଁ ଯଥେଷ୍ଟ ସୁଯୋଗ ରହିଛି ।

(୨) ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ୪ର୍ଥ ଓ ୫ମ ଯୋଜନାରୁ ଚାଲୁଥିବା ୩୩୧ ପ୍ରକଳ୍ପରୁ ୩୨୨ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ଏବଂ ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ଅନୁମୋଦନ ଲାଭ କରିଥିବା ୬୭ଟି ପ୍ରକଳ୍ପ ମଧ୍ୟରୁ ୮ଟି ପ୍ରକଳ୍ପ ମଧ୍ୟ ଶେଷ ହୋଇଛି । ୭ମ ପଞ୍ଚବାର୍ଷିକ ଯୋଜନାରେ ୬୮ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ସାରିବାର ଲକ୍ଷ୍ୟ ରହିଛି । ଏହି ୫୯ଟି ପ୍ରକଳ୍ପ ମଧ୍ୟରୁ ୩୦ଟି ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।



ନିଷ୍କାସନ ପଦ୍ଧତିରେ ଜାଲୁଆ ଜମିରେ ଧାନ ଚାଷ . (ଫୁଲବାଣୀ-ଅସ୍ମଲ୍ ପଡ଼ା)

(୩) ଏହି ୬୮ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବା ପାଇଁ ତଥା ଗତ ବର୍ଷ ଶେଷ ହୋଇଥିବା ପ୍ରକଳ୍ପର ବାକିଆ ପାଉଣା ଭରଣା କରିବା ପାଇଁ ପ୍ରାୟ ୧୦୩କୋଟି ଟଙ୍କା ଆବଶ୍ୟକ ହେବ । ଏହା ଦ୍ୱାରା ୪୬'୪୦୦ ହେକ୍ଟର ଜମିକୁ ପାଣି ଯୋଗାଇ ଦିଆଯାଇ ପାରିବ । ତା' ଛଡ଼ା ୬ କୋଟି ଟଙ୍କା ମିଳିଲେ ୧୬ଟି ଡ଼ି. ପି. ଏ. ପି. ଏବଂ ୨୦ଟି ଆଇ. ଟି. ଡ଼ି. ପି. ର ଅନ୍ତର୍ଭୁକ୍ତ ଅସଂପୂର୍ଣ୍ଣ ପ୍ରକଳ୍ପର କାର୍ଯ୍ୟ ଶେଷ କରାଯାଇ ପ୍ରାୟ ୫,୦୦୦ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିବ ।

## ଅନୁସନ୍ଧାନ

(୪) ୮୬୨ଟି କ୍ଷୁଦ୍ର ଜଳସେଚନ ଯୋଜନାର ଅନୁସଂଧାନ କାର୍ଯ୍ୟ ଇତି ମଧ୍ୟରେ ଶେଷ ହୋଇଛି ଏବଂ ସେଗୁଡ଼ିକର ନିର୍ମାଣ କାର୍ଯ୍ୟ ଅର୍ଥ ବରାଦ ଉପରେ ନିର୍ଭର କରେ । ଯୋଜନା ଅଧ୍ୟକ୍ଷ (Planning Commission) ଏହି ନୂତନ ଯୋଜନାଗୁଡ଼ିକ କାର୍ଯ୍ୟକାରୀକରାଇବା ପାଇଁ ଅନିଚ୍ଛା ପ୍ରକାଶ କରୁଛନ୍ତି ।

## ଅକାମୀ ହୋଇଥିବା ପ୍ରକଳ୍ପର ପୁନଃଉଦ୍ଧାର

(୫) ବର୍ତ୍ତମାନ କ୍ଷୁଦ୍ର ଜଳସେଚନ ବିଭାଗ ଅଧୀନରେ ୪,୪୪୭ଟି ଏହିପରି ପ୍ରକଳ୍ପ ରହିଛି । ତନ୍ମଧ୍ୟରୁ ୧,୩୦୩ଟି ପ୍ରକଳ୍ପ ଗ୍ରାମ ଗୋଷ୍ଠୀ ବିଭାଗ ଅଧୀନରୁ ଏହି ବିଭାଗକୁ ଆସିଛି । ଅକାମୀ ହୋଇଥିବା ୨,୧୭୮ଟି ପ୍ରକଳ୍ପ ମଧ୍ୟରୁ ୧,୪୯୬ଟି ସଂପୂର୍ଣ୍ଣ ଭାବେ ଅକାମୀ ଏବଂ ୬୮୨ଟି ପ୍ରକଳ୍ପ ଆଂଶିକ ଭାବେ ଅକାମୀ ହୋଇ ପଡ଼ିଛି । ଏହି ସମସ୍ତ ପ୍ରକଳ୍ପର ଅନୁକଳ୍ପିତ ଚାଷୋପଯୋଗୀ ଜଳସେଚିତ ଜମିର ପରିମାଣ ୩୪୭,୭୦୫ ଏକର ଥିବା ସ୍ଥଳେ ଏହାର ପ୍ରମାଣିତ ଚାଷପୋଯୋଗୀ ଜଳସେଚିତ ଜମିର ପରିମାଣ ୧୦୫,୨୫୦ ଏକର ଅଟେ । ବାକୀ ରହିଥିବା ୨୪୨,୪୫୫ ଏକର (୯୮,୧୬୦ ହେକ୍ଟର) ଜମିକୁ ଜଳସେଚନ ଯୋଗାଇବା ପାଇଁ ୧୧୧ କୋଟି ଟଙ୍କା ଆବଶ୍ୟକ । ପ୍ରକାଶଥାଉକି (ପୁନ ରୁଦ୍ଧାର କରିବା ପାଇଁ ଏକର ପିଛା ଖର୍ଚ୍ଚ ନୂତନ ପ୍ରକଳ୍ପର ଏକର ପିଛା ଖର୍ଚ୍ଚ ଅପେକ୍ଷା ଯଥେଷ୍ଟ କମ୍) ।

## ବ୍ଲକ୍ ଅନ୍ତର୍ଭୁକ୍ତ ପ୍ରକଳ୍ପ

(୬) ଗ୍ରାମଗୋଷ୍ଠୀ ବିଭାଗରୁ ଆସିଥିବା ୧,୩୦୩ଟି ମଧ୍ୟରୁ ୧,୨୬୬ଟି ପ୍ରକଳ୍ପ ଅକାମୀ । (୧,୧୪୬ଟି ସଂପୂର୍ଣ୍ଣ ଏବଂ ୧୨୦ଟି ଆଂଶିକ ଅକାମୀ) ଏହି ପ୍ରକଳ୍ପ ଗୁଡ଼ିକର ପୁ... ପାଇଁ ପ୍ରାୟ ୩୯.୧୭ କୋଟି ଟଙ୍କାର ଆବଶ୍ୟକତା ଥି... ଯୋଜନା କିମ୍ବା ଅଣଯୋଜନା ଖର୍ଚ୍ଚ ବାବଦରେ କୌ... ମଞ୍ଜୁର କରାଯାଇ ନାହିଁ । ସେଥିପାଇଁ ଆର. ଏଲ୍. ଇ. ଜି. ଏନ୍. ଆର. ଇ. ପି. ପରିକଳ୍ପନାରୁ ଅର୍ଥ ବରାଦ କରିବା ପାଇଁ ଦିଆଯାଉଛି ।

(୭) ଗ୍ରାମ୍ୟ ଭୂମି ହୀନ ଶ୍ରମିକ କର୍ମଯୋଗାଣ ପରିକ... ଜାତୀୟଗ୍ରାମ୍ୟ ନିଯୁକ୍ତି ପରିକଳ୍ପନା [ଆର. ଏଲ୍. ଇ. ଜି. ଏନ୍. ଆର. ଇ. ପି.]

ଏହି ପରିକଳ୍ପନା ଜରିଆରେ ୯୨ଟି ପ୍ରକଳ୍ପର ପୁନ ରୁଦ୍ଧା... ଗ୍ରାମ୍ୟ ଗୋଷ୍ଠୀ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗକୁ ... ଟଙ୍କାର ଖର୍ଚ୍ଚ ଅଟକଳ ବରାଦ କରାଯାଇଛି । ଏହା କାର୍ଯ୍ୟ... ହେଲେ ୪,୮୧୫ ହେକ୍ଟର ଖରିଫ୍ ଏବଂ ୪୬୭ ହେକ୍ଟର ... ଫସଲ ପାଇଁ ଜଳ ଯୋଗାଇ ଦିଆଯାଇ ପାରିବ । ଏହା ... ଜିଲ୍ଲାପାଳମାନେ ମଧ୍ୟ ଜାତୀୟ ଶ୍ରମ ଯୋଗାଣ ... ମାଧ୍ୟମରେ ବିଭିନ୍ନ ପ୍ରକଳ୍ପଗୁଡ଼ିକର ପୁନ ରୁଦ୍ଧାର କାର୍ଯ୍ୟ ... ଆବଶ୍ୟକ ଅର୍ଥ ଯୋଗାଣର ସମ୍ମତି ପ୍ରଦାନ କରିଥିଲେ ।

(୮) କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ସମ୍ମୁଖରେ ... ସମସ୍ୟା ହେଲା, ଅର୍ଥ ଯୋଗାଣ ଓ ଜମି ଦଖଲ ।

## I. T. D, P. ଓ D. P. A. P. ବ୍ୟୟ...

(୯) ୫ମ ଓ ୬ଷ୍ଠ ଯୋଜନା କାଳ ମଧ୍ୟରେ ଏହି ପ୍ର... ଗୁଡ଼ିକ ପାଇଁ ବିଗତ କେତେବର୍ଷ ଧରି କେନ୍ଦ୍ରୀୟ ... ମିଳି ଆସୁଥିଲା । ମାତ୍ର ୨୦ଟି ପ୍ରକଳ୍ପର ମୁଖ୍ୟ ... ଶେଷ ହୋଇଥିଲେ ମଧ୍ୟ ଆଇ. ଟି. ଡ଼ି. ପି. ... ମିଳୁଥିବା ଅର୍ଥ ବଂଦ ହୋଇଯିବା ଫଳରେ ଏ... କାର୍ଯ୍ୟ ସଂପୂର୍ଣ୍ଣ ହୋଇପାରିନାହିଁ । ଏଥିପାଇଁ ...

ଟଙ୍କାର ଆବଶ୍ୟକତା ରହିଛି । ଏହା ସଂପୂର୍ଣ୍ଣ ହେଲେ ୧,୯୭୦ ହେକ୍ଟର ଜମିରେ ଜଳସେଚନ କରାଯାଇ ପାରିବ ' ସେହିପରି ପ୍ରାୟ ୧୬ଟି ଡ଼ି. ପି. ଏ. ପି. ପ୍ରକଳ୍ପର ଅନୁଦାନ କମାଇ ଦିଆଯାଇଛି ଏବଂ ରାଜ୍ୟ ଯୋଜନାରୁ ୨ ଗୋଟି ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ସକାଶେ ପ୍ରସ୍ତାବ ଦିଆଯାଇଛି । ଏହି ୧୬ଟି ପ୍ରକଳ୍ପର କାର୍ଯ୍ୟ ଶେଷ କରିବାପାଇଁ ପ୍ରାୟ ୩କୋଟି ଟଂକାର ଆବଶ୍ୟକତା ରହିଛି ।

## ଅନ୍ୟାନ୍ୟ ଜଳସେଚନ ଯୋଜନା ତୁଳନାରେ କ୍ଷୁଦ୍ର ଜଳସେଚନ ଯୋଜନାର ସୁବିଧା ।

(୧୦) (କ) ସୁଦୂର ଓ ଆଦିବାସୀ ଅଧ୍ୟୁଷିତ ଓ ଚିର ମରୁଡ଼ି ପ୍ରପୀଡ଼ିତ ଅଂଚଳମାନଂକରେ କ୍ଷୁଦ୍ର ଜଳଗ୍ରହ କ୍ଷେତ୍ରକୁ କେନ୍ଦ୍ରକରି କ୍ଷୁଦ୍ର ଜଳସେଚନ ଯୋଜନା ଦ୍ୱାରା ଜଳସେଚନର ଯଥେଷ୍ଟ ସୁଯୋଗ ସୃଷ୍ଟି କରିହେବ ଯେଉଁଠାରେ ମଧ୍ୟମ କିମ୍ବା ବୃହତ୍ତ ଜଳସେଚନ ଯୋଜନା ଆଦୌ ସମ୍ଭବପର ନୁହେଁ ।

(ଖ) ମଧ୍ୟମ ଓ ବୃହତ୍ତ ଜଳସେଚନ ଯୋଜନା ଦ୍ୱାରା କେତେକ ନିର୍ଦ୍ଦିଷ୍ଟ ଅଂଚଳର ଲୋକମାନଂକ କର୍ମଯୋଗାଣ ସମ୍ଭବପର ହେଉଥିବା ସ୍ଥଳେ କ୍ଷୁଦ୍ରଜଳସେଚନ ଯୋଜନା ଦ୍ୱାରା ବିସ୍ତୃତ ଅଂଚଳରେ କର୍ମଯୋଗାଣ ସମ୍ଭବପର ହୋଇପାରୁଛି ।

(ଗ) ଏହା ଜିଲ୍ଲା ଜିଲ୍ଲା ମଧ୍ୟରେ ଓ ଜିଲ୍ଲା ଅନ୍ତର୍ଗତ ବ୍ଲକ୍‌ମାନଙ୍କର ଜଳସେଚନର ବିଷମତାକୁ ଦୂର କରିପାରିବ । ଅର୍ଥ ବରାଦ ଓ ଜମିଦଖଲ ହେଲେ ଏହି ପ୍ରକଳ୍ପଗୁଡ଼ିକ ସ୍ୱଳ୍ପ ସମୟ ସୀମା ଯଥା ୨/୩ ବର୍ଷ ମଧ୍ୟରେ ସଂପୂର୍ଣ୍ଣହୋଇ ପାରିବ । ମଧ୍ୟମ ଓ ବୃହତ୍ତ ଜଳସେଚନ ଯୋଜନା ଅପେକ୍ଷା ଏହି ପ୍ରକଳ୍ପଗୁଡ଼ିକରେ ସ୍ୱଳ୍ପ ଅର୍ଥ ବିନିଯୋଗ ହେବ ।

(୧୧) ଯୋଜନା ଅଧ୍ୟକ୍ଷଙ୍କ (ପ୍ଲାନିଙ୍ଗ କମିଶନ) ସମ୍ମୁଖରେ ୧୪୭ କୋଟି ଟଂକାର ଏକ ଦାବୀ ପେଶ୍ କରାଯାଇଥିଲା । କିନ୍ତୁ କାର୍ଯ୍ୟକାରୀ ଦଳ ସେଥିମଧ୍ୟରୁ ୯୬'୭୦ କୋଟି ଟଂକା ପ୍ରକଳ୍ପ ଗୁଡ଼ିକପାଇଁ ଏବଂ ୨'୫୦ କୋଟି ଟଂକା ଗ୍ରାମ୍ୟ ଗୋଷ୍ଠୀ ଯୋଜନାରୁ ଆସିଥିବା ପ୍ରକଳ୍ପର ପୁନ ରୁଦ୍ଧାର ପାଇଁ ସୁପାରିଶ କରିଥିଲେ ।

ମାତ୍ର ସପ୍ତମ ଯୋଜନାର ପୂର୍ଣ୍ଣ ରୂପରେଖ ପୂର୍ବରୁ ପ୍ରଥମ ବର୍ଷରେ କେବଳ ୧୨ କୋଟି ଟଂକାର ବ୍ୟୟ ପାଇଁ ବରାଦ କରାଯାଇଛି ।



ବିଶ୍ୱ ଶାନ୍ତି ସମ୍ମିଳନୀ ପ୍ରତିନିଧିମାନଙ୍କ ସହ ପ୍ରଧାନମନ୍ତ୍ରୀ



আସିଗଲା
ଗ୍ଲୁକନ-ଡି (T)
ସୁପରହୀରୋ
ସବୁ ମାଆଙ୍କର
ସ୍ନେହର
ସୁପରହୀରୋ !
Glaxo
Glucon-D
Glucose-D
200 GRAMS NET
GLAXO LABORATORIES (INDIA) LTD
ଗ୍ଲୁକନ-ଡି ସୁପରହୀରୋରେ ଯେସବୁ ଗୁଣ ଅଛି, ଯାହା ଆପଣ ନିଜ ସ୍ନେହର ସନ୍ତାନଠାରେ ଦେଖିବାକୁ ସଦା ଆଗ୍ରହୀ, ଯେମିତିକି, ସିଏ ଅନ୍ୟ ପିଲାଙ୍କ ତୁଳନାରେ ତେଜ, ଫୁର୍ତ୍ତିଲା ଆଉ ଉତ୍ସାହୀ ରହିବ ।
ନିଜର ପ୍ରିୟ କୁନମୁନିଙ୍କୁ ଦିଅନ୍ତୁ ସୁପରହୀରୋଙ୍କ ବିଶେଷ ପସନ୍ଦ ଆସୁଥିବା ପେୟ — ଗ୍ଲୁକନ-ଡି ।
ଗ୍ଲୁକନ-ଡି'ରେ ଅଛି ଗ୍ଲୁକୋଜ, ଭିଟାମିନ ଡି ଓ କାଲସିଅମ ଫସଫେଟ, ଯାହା ଆପଣଙ୍କ ସନ୍ତାନକୁ ଦିଏ ତୁରନ୍ତ ଶକ୍ତି — ଭଲ ପଢ଼ାଶୁଣା କରିପାରିବା ଲାଗି, ଆଉ ଭଲ ଖେଳକୁଦ କରିପାରିବା ଲାଗି ।
ଏବେ ନିଜ ଘରେ ପାଇପାରିବେ ଆପଣଙ୍କ ସ୍ୱପ୍ନର ସୁପରହୀରୋ — ଗ୍ଲାକ୍ସୋ'ର ଗ୍ଲୁକନ-ଡି ସାହାଯ୍ୟରେ ।
ଏହି ଅସଲି
ନୂଆ ପ୍ୟାକ
ଦେଖି
ନିଅନ୍ତୁ ।
ଗ୍ଲୁକନ-ଡି (T)
ତୁରନ୍ତ ଶକ୍ତି ଦେଉଥିବା ପେୟ ସୁପରହୀରୋ'ର ବିଶେଷ ପସନ୍ଦ ।
GLL 1642

# ଭୁବନାନନ୍ଦ : ବିଚିତ୍ରାନନ୍ଦ

ଡଃ ରାଧାନାଥ ରଥ

୧୮୮୫ ମଇ ଚଉଦ ତାରିଖ ଓଡ଼ିଶାର ଦୁଇ ବରପୁତ୍ର ସ୍ୱର୍ଗୀୟ ଦେଶ ସେବକ ଭୁବନାନନ୍ଦ ଦାସ ଓ ଗରିବ ସେବକ ବିଚିତ୍ରାନନ୍ଦ ଦାସଙ୍କ ଜନ୍ମ ଦିବସ । ୧୮୮୫ ମଇ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଏହି ଦୁଇ ଯାଆଁଳା ଭାଇଙ୍କର ପୁରୀ ଜିଲ୍ଲା ବାଲିପାଟଣା ଥାନା ଅନ୍ତର୍ଗତ କୁରୁଞ୍ଜିପୁର ଗ୍ରାମରେ କାନୁନ୍‌ଗୋ ଶ୍ରୀ ରାମଚନ୍ଦ୍ର ଦାସଙ୍କ ଔରସରେ ଜନ୍ମ । ଆଜିକୁ ଶହେ ବର୍ଷ ପୂରିଗଲା । ଏ ଦୁଇ ଭାଇଙ୍କ ମଧ୍ୟରୁ ଜଣେ ବିଲାତ ଫେରନ୍ତା ଇଂଜିନିୟର୍ ଓ ଅନ୍ୟ ଜଣକ ଜଣେ ପ୍ରଖ୍ୟାତ ଆଇନଜୀବୀ ରୂପେ ଜୀବନ ଯାତ୍ରା ଆରମ୍ଭ କରିଥିଲେ । ଉଭୟଙ୍କର ଅସାଧାରଣ ଧୀଶକ୍ତି, ଜାତୀୟ ଜୀବନ ପ୍ରତି ଅନୁରକ୍ତି ଏବଂ ଉତ୍କଳ-ମାତା ପ୍ରତି ଅସାଧାରଣ ଭକ୍ତି ଥିଲା । ଭୁବନାନନ୍ଦ ବାବୁ ବମ୍ବେରେ ସ୍ୱାଧୀନ ଇଂଜିନିୟରିଂ ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ଦେଶର ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ । ବିଚିତ୍ରାନନ୍ଦ ବାବୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ୧୯୩୭ରେ ଯେତେବେଳେ ବିଧାନ ସଭା ନିର୍ବାଚନ ହେଲା, ସେତେବେଳେ ସେ କଂଗ୍ରେସ ପକ୍ଷରୁ ବିଧାନ ସଭା ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ । ଭୁବନାନନ୍ଦ ବାବୁ ସ୍ୱାଧୀନତା ପରେ କନ୍‌ଷ୍ଟିଚୁଏଣ୍ଟ ଆସେମ୍ବ୍ଲି, ଲୋକ ସଭା ଓ ରାଜ୍ୟ ସଭାର ସଭ୍ୟ ରୂପେ ତାଙ୍କର ଅସାଧାରଣ କୃତିତ୍ୱ ଦେଖାଇଥିଲେ । ଓଡ଼ିଆ ଭାଷୀ ବିଚ୍ଛିନ୍ନାଞ୍ଚଳମାନଙ୍କର ମିଶ୍ରଣ ଏବଂ ଓଡ଼ିଶା ଗଡ଼ଜାତ ଅଞ୍ଚଳଗୁଡ଼ିକର ମିଶ୍ରଣ ସଙ୍ଗେ ସଙ୍ଗେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ଦିଗରେ ତାଙ୍କର ନେତୃତ୍ୱ ବିଶେଷ ଉଲ୍ଲେଖ ଯୋଗ୍ୟ ।

୧୯୨୮ ରେ ଯେତେବେଳେ ସାଇମନ୍ କମିଶନ୍ ଭାରତକୁ ଆସିଲେ ନିଖିଳ ଭାରତ କଂଗ୍ରେସ ପକ୍ଷରୁ ଉକ୍ତ କମିଶନ୍‌କୁ ବର୍ଜନ କରାଯାଇଥିଲା । କିନ୍ତୁ ଭୁବନାନନ୍ଦ ବାବୁ ସାଇମନ୍ କମିଶନ୍ ତଥା ୧୯୨୮ ଭାରତର ସର୍ବଦଳ ସମ୍ମିଳନୀକୁ ଉତ୍କଳ ସମ୍ମିଳନୀର ସଭାପତି ରୂପେ ଯେଉଁ ସ୍ମାରକ ପତ୍ର ଦେଇଥିଲେ ଏବଂ ଯେଉଁ ଘୋଷଣା କରିଥିଲେ ଏଥିରେ ଓଡ଼ିଶା ଗଡ଼ଜାତ ସମେତ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଏହା ପୂର୍ବରୁ ଗଡ଼ଜାତର ମିଶ୍ରଣ ପାଇଁ କେହି କେବେ ଆନୁଷ୍ଠାନିକ ଭାବେ ଦାବୀ କରିନଥିଲେ ।

୧୯୩୧ରେ ବିଲାତରେ ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀକୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣ ଚନ୍ଦ୍ର ଗଜପତି ନାରାୟଣ ଦେବ ଓ ଖଲ୍ଲିକୋଟର ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କ ସହିତ ସେ ବିଲାତ ଯାଇଥିଲେ । ଗଞ୍ଜାମର ପ୍ରଖ୍ୟାତ ଆଇନଜ୍ଞ ଓ ବାଗ୍ମୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ମହୋଦୟ ମଧ୍ୟ ଏମାନଙ୍କ ସହିତ ଯାଇଥିଲେ । ସାର୍ ସାମୁଏଲ୍ ହୋର୍ ସେତେବେଳେ ଭାରତ ମନ୍ତ୍ରୀ । ଲର୍ଡ ଇରଉଇନ୍ ଭାରତର ବଡ଼ଲାଟ । ଶ୍ରମିକ ଦଳର ନେତା ମିଷ୍ଟର୍ ରାମ୍‌ସେ ମାକ୍‌ଡୋନାଲ୍‌ଡ଼ ପ୍ରଧାନ ମନ୍ତ୍ରୀ । ଲର୍ଡ ସାଙ୍କି ଗୋଲ୍ ଟେବୁଲ୍ ସମ୍ମିଳନୀର ସଭାପତି । ପାରଳାଖେମୁଣ୍ଡି ମହାରାଜା ଏବଂ ଖଲ୍ଲିକୋଟ ରାଜା ବାହାଦୁରଙ୍କୁ ଭୁବନାନନ୍ଦ ବାବୁ ଓ ଲିଙ୍ଗରାଜ ବାବୁ ଓଡ଼ିଶା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ବିଷୟରେ ଦାବୀ ଉପସ୍ଥାପିତ କରିବାରେ ଯେଉଁ ସାହାଯ୍ୟ କରିଥିଲେ ତାହା ଅବିସ୍ମରଣୀୟ । ୧୯୨୮ ରେ ସାଇମନ୍ କମିଶନ୍‌ଙ୍କ ଅଟ୍‌ଲି ସବ୍ କମିଟିକୁ ପାରଳାଖେମୁଣ୍ଡିର ମହାରାଜା, ବିହାରର ଡକ୍ଟର୍ ସଚ୍ଚିଦାନନ୍ଦ ସିଂହ ଏବଂ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ତଥା ଦେବାନ୍ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଯେପରି ପ୍ରଭାବିତ କରିଥିଲେ ତାହା ଭୁଲିବାର ନୁହେଁ ।

ଭୁବନାନନ୍ଦ ବାବୁ ଭାରତ ପାର୍ଲାମେଣ୍ଟରେ ବୟୋଜ୍ୟେଷ୍ଠ ସଭ୍ୟ ରୂପେ ସମ୍ମାନିତ ହେଉଥିଲେ ଏବଂ ପବ୍‌ଲିକ୍ ଆକାଉଣ୍ଟସ୍ କମିଟିର ବରାବର ଚେୟାରମ୍ୟାନ୍ ହୋଇ ରହୁଥିଲେ । ତାଙ୍କର ନିର୍ଭିକତା ଓ ପାର୍ଲାମେଣ୍ଟାରିଆନ୍ ଭାବରେ ତାଙ୍କର ତଥ୍ୟ ସଂବଳିତ ବକ୍ତୃତା ପାଇଁ ସମସ୍ତେ ତାଙ୍କୁ ଖାତିର କରୁଥିଲେ । ୧୯୩୬ ଅପ୍ରେଲ ପହିଲା ତାରିଖରେ ବିଲାତ ସରକାରଙ୍କ ଦ୍ୱାରା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଘୋଷିତ ହେବାରେ ତାଙ୍କର ଜୀବନର ସାଧନା ସାର୍ଥକ ହେଲା ବୋଲି ସେ ଘୋଷଣା କରିଥିଲେ ।

ତାଙ୍କ ଭ୍ରାତା ଶ୍ରୀ ବିଚିତ୍ରାନନ୍ଦ ଦାସ ଜଣେ ଅମାୟିକ ସ୍ୱଦେଶ ପ୍ରେମୀ, ଅତିଥି ପରାୟଣ, ବିଶେଷରେ ଦରିଦ୍ର ଦୁଃସ୍ଥ ଲୋକଙ୍କ ସେବାପରାୟଣ ଏବଂ ଜଣେ ସ୍ନେହୀ ବନ୍ଧୁ ଓ ଚରିତ୍ର ବାନୀୟ

ଆଇନଜୀବୀ ରୂପେ ସମସ୍ତଙ୍କ ସ୍ନେହ, ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । ସେ ଓଡ଼ିଶାର ପ୍ରଥମ ଆଡ଼ଭୋକେଟ୍ ଜେନେରାଲ୍ ହୋଇଥିଲେ । ଓଡ଼ିଶା ବିଧାନ ସଭାରେ ବିରୋଧୀ ଦଳର ନେତା ହୋଇଥିଲେ । ସେ ତ୍ୟାଗବୀର ଓ ଦାନବୀର ବୋଲି ସବୁ ଶ୍ରେଣୀର ଲୋକଙ୍କ ପକ୍ଷରେ ଆଦରର ପାତ୍ର ଥିଲେ । ସେ ବହୁକାଳ ବିପତ୍ନୀକ ଜୀବନ ଯାପନ କଲେ । ତାଙ୍କ ଘର ଏକ 'ଅତିଥିଶାଳା' ହୋଇଥିଲା । ଦୀନବନ୍ଧୁ ଆଣ୍ଡ୍ରୁଜ୍‌ଠାରୁ ଆରମ୍ଭ କରି ପଣ୍ଡିତ କୁଂଜରୁଙ୍କ ପର୍ଯ୍ୟନ୍ତ, ଓଡ଼ିଶାର ସବୁ ଶ୍ରେଣୀର ସ୍ୱାଧୀନତା ସଂଗ୍ରାମୀ ଓ ଦେଶ ସେବକମାନେ ତାଙ୍କ ସାହା ଓ ଆତିଥ୍ୟ ଲାଭ କରି ପାରୁଥିଲେ । ଶେଷ ଜୀବନରେ ଏ ପ୍ରକାର ସେ ସନ୍ନ୍ୟାସ ଜୀବନ ଅତିବାହିତ କରି ବିଦା ନେଲେ ।

ଏହି ଦୁଇ ବିଶିଷ୍ଟ ଦେଶ ସେବକଙ୍କ ସ୍ମୃତି ରକ୍ଷା ଓଡ଼ି ବାସୀଙ୍କ ପକ୍ଷରେ ଏକ ଜାତୀୟ କର୍ତ୍ତବ୍ୟ ।

ସଂପାଦକ ''ସମାଜ'' [ଆକାଶବାଣୀ ସୌଜନ୍ୟରୁ



ପାର୍ଲାମେଣ୍ଟାରିଆନ୍ ଭୁବନାନନ୍ଦ

ଇଞ୍ଜିନିୟର ଭୁବନାନନ୍ଦ ......



# ଗୋଟିଏ ସ୍ମୃତି

ଶ୍ରୀ ହରିହର ମହାପାତ୍ର

ସ୍ୱାମୀଜୀଙ୍କ ସହିତ ପ୍ରଥମ ସାକ୍ଷାତ ଓ ଆଳାପ ପୁରୀରୁ ଥିବା ସକାଳ ପାସେଞ୍ଜର ଟ୍ରେନ୍‌ର ଇଣ୍ଟର କ୍ଲାସ୍ ମେଣ୍ଟରେ, ୧୯୨୩ ମସିହାରେ । ମୁଁ ଆସୁଥିଲି ଗାଁରୁ ଗୋପାଳ ଷ୍ଟେସନ୍‌ରୁ ରେଭେନ୍‌ସା କଲେଜ ହଷ୍ଟେଲକୁ । ସେତେବେଳେ ମୁଁ ଥିଲି ବି.ଏ. ପ୍ରଥମ ବର୍ଷର ଛାତ୍ର । ସ୍ୱାମୀଜୀ ଥିଲେ ଭୁବନେଶ୍ୱରରୁ । ମୋ ସାଙ୍ଗରେ ଥିଲା ଗୋଟିଏ ପେଡ଼ି । ତାହା ସ୍ୱାମୀଜୀଙ୍କ ଦୃଷ୍ଟି ଆକର୍ଷଣ କଲା । ମୋ ବିଷୟ ପଚାରି, ଅତି ସହୃଦୟତା ପ୍ରକାଶ କଲେ ।

ତାର ଅଳ୍ପ ଦିନପରେ କଟକ ମ୍ୟୁନିସିପାଲିଟିର ନିର୍ବାଚନ ହେଲା । ଆମେ ହଷ୍ଟେଲରେ ରହୁଥିବା ସାବାଳକ ପିଲାଏ ସେଥିରେ ଭୋଟର ତାଲିକା ଭୁକ୍ତ ହେବା ପାଇଁ ଦାବୀ କଲୁ । ସେଥିକ୍ରମେ ମୁଁ ଆଗକୁ ବାହାରିଲି । ରାମଶଙ୍କର ରାୟ ଥିଲେ, ନାଟ୍ୟକାର ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଥାନ୍ତି । ତାଙ୍କର ଚୌଧୁରୀ ବଜାର ଦ୍ୱିତଳ କୋଠାରେ ସବୁ ପିଲାଙ୍କର ଦସ୍ତଖତ ସମ୍ବଳିତ ଦରଖାସ୍ତ ନେଇ ମୁଁ ହାଜର ହେଲାବେଳେ, ରାମଶଙ୍କର ବାବୁ ତାଙ୍କ ମହକିଲ, ମୋହରିରଙ୍କ ଗହଣରେ ବସିଥାଆନ୍ତି । ମ୍ୟୁନିସିପାଲିଟିର କେତେକ କର୍ମଚାରୀ ମଧ୍ୟ ଥାଆନ୍ତି । ମୁଁ ପିଲାଟାଏ, ମୋ ଆଡ଼େ ଭ୍ରୂକ୍ଷେପ କଲେ ନାହିଁ । କିଛି ସମୟ ଅପମାନରେ ଠିଆ ହୋଇ ରହି ମୋ ନେବା ପଣିଆ ପ୍ରାୟ ଭାଙ୍ଗି ପଡ଼ିବା ଉପରେ । ବୟସ୍କ ମୋହରୀର ଜଣେ ମୋ ହାତରେ ଲମ୍ବା କାଗଜ ଦେଖି ଭାବିଲେ, ବୋଧ ହୁଏ କୌଣସି ମକଦମା ପାଇଁ ଆସିଛି । ମୋ ହାତରୁ କାଗଜ ନେଇ ରାମଶଙ୍କର ବାବୁଙ୍କ ଡ୍ରେସ ଉପରେ ରଖିଲେ । ସେ ରୋଷ ନେତ୍ରରେ ମତେ ପଚାରିଲେ, କଥା କ'ଣ ? ମୁଁ ଆମ ଭୋଟର ଦାବୀ କଥା କହିବାରୁ ନାପସନ୍ଦ ହସରେ ଦରଖାସ୍ତଟି ଦେଖିଲେ । ସବୁ ପିଲାଙ୍କ ପକ୍ଷରୁ ଦରଖାସ୍ତ ଦାଖଲ କରିବା ପାଇଁ ମୋ ଅଧିକାର କେଉଁଠୁ ଆସିଲା ବୋଲି ପଚାରନ୍ତେ, ମୁଁ ଥତମତ ହୋଇଗଲି । ମୋର ଅସହାୟ ଅବସ୍ଥା ଦେଖି ତାଙ୍କର ବୋଧ ହୁଏ ଦୟା ହେଲା । କହିଲେ, power of attorney ଆଣ, ତେବେ ଯାଇ ତମ ଦରଖାସ୍ତ ବିଚାର ହେବ । Power of attorney କ'ଣ ମୁଁ ଜାଣିନଥାଏ । କୌଣସି ଓକିଲଙ୍କୁ ମଧ୍ୟ ଜାଣିନଥାଏ । ମନେ ପଡ଼ିଲେ ସ୍ୱାମୀଜୀ । ଗଲି ତାଙ୍କ ଦରଗପଡ଼ା ଘରକୁ । ବାହାର ବାରଣ୍ଡାରେ ତେଲ ମାଲିସ ହେଉଥାନ୍ତି ଗାଧୋଇବା ପାଇଁ । ପଥର କୁଣ୍ଡରେ ପାଣି ଭରାଥାଏ । ପାଖରେ ଚାକର । ଦ୍ୱିଧା ଓ ସଙ୍କୋଚରେ ତାଙ୍କୁ ମୋ ଦୟନୀୟ ଅବସ୍ଥା ଜଣାଇଲି । ଟ୍ରେନରେ ଯେଉଁ ସହୃଦୟତାର ପରିଚୟ ପାଇଥିଲି, ତାହାରି ଉପରେ ନିର୍ଭର କରିବା ମୋର ବ୍ୟର୍ଥ ହେଲାନାହିଁ । ରାମଶଙ୍କର ବାବୁଙ୍କ ଉପହାସ ଓ ଦୂର ଦୂର ଭାବ ଅଧିକ ଜଣାପଡ଼ିଲା, ସ୍ୱାମୀଜୀଙ୍କ ଅକୁଣ୍ଠ ସହାୟତା ପ୍ରକାଶରେ, ମୋହରୀରକୁ ଡାକି, ଷ୍ଟାମ୍ପ ପେପର କିଣି, ଟାଇପ କରାଇ power of attorney ମତେ ଦେବାର ବରାଦ୍ କରିଦେଲେ ତତ୍‌କ୍ଷଣାତ୍ । ମୋର ଦମ କେବଳ ବଢ଼ିଲା ନାହିଁ, କିଛିଟା ବିଜୟ ଉଲ୍ଲାସରେ ଯାଇ ଭେଟିଲି ପୁଣି ରାମଶଙ୍କର ବାବୁଙ୍କୁ । ସେ ଅଗତ୍ୟା ଭୋଟର ତାଲିକାରେ ଆମ ନାମ ସବୁ ଯୋଡ଼ିବାକୁ ଆଦେଶ ଦେଲେ । ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲରେ ସେ ଦିନ ଗଡ଼ଜୟ । ସ୍ୱାମୀଜୀଙ୍କ ସହୃଦୟତା ସମସ୍ତଙ୍କୁ ଜଣାଇଲି । ସେହିଦିନୁ ମୁଁ ହେଲି ସ୍ୱାମୀଜୀଙ୍କର ଜଣେ ଅନୁରକ୍ତ ।

ଓକିଲାତି କରିବାକୁ କଟକ ଆସିଲି ୧୯୩୧ ସେପ୍ଟେମ୍ବର ମାସରେ । ସ୍ୱାମୀଜୀଙ୍କର ପ୍ରତିଷ୍ଠା, କଚେରୀରେ, କଚେରୀ ବାହାରେ ଅତି ଉଚ୍ଚରେ । ମୁକ୍ତରୁ ତାଙ୍କ ସଙ୍ଗେ ସାମିଲ ହେଲି ସାଧାରଣ କ୍ଷେତ୍ରରେ । ଓଡ଼ିଶା ରିଲିଫ୍ କମିଟି, ଉତ୍କଳ ସମ୍ମିଳନୀ, ଡୁଡୁମା ଆନ୍ଦୋଳନ, ଦେଶ ମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ, ଓଲଡ଼ ବୟେଜ ଆସୋସିଏସନ୍, ଓଡ଼ିଆ ପିପ୍‌ଲସ୍ ଆସୋସିଏସନ୍, ପୁଅର କଟେଜ ଇଣ୍ଡଷ୍ଟ୍ରିଜ, ପ୍ରଭୃତି ନାନା କ୍ଷେତ୍ରରେ ସ୍ୱାମୀଜୀଙ୍କ ସଙ୍ଗେ କାର୍ଯ୍ୟ କରିବାର ସୁଯୋଗ ଆସିଥିଲା । ସର୍ବତ୍ର ଓ ସର୍ବଦା ତାଙ୍କର ଦରଦୀ ପ୍ରାଣର ସ୍ପର୍ଶ ମିଳୁଥିଲା । ବିପନ୍ନଙ୍କର ଦୁଃଖର କେତୋଟି କାହାଣୀ ତାଙ୍କ ଠାରୁ ଶୁଣିଲାବେଳେ ଅନ୍ତର ମନ୍ଥିତ ହୋଇଯାଉଥିଲା । ନିଜର ଦୁଃଖକୁ ସେ ସବୁବେଳେ ଘୋଡ଼ାଇ ରଖୁଥିଲେ, ଅନ୍ୟମାନଙ୍କ ଦୁଃଖମୋଚନର ପ୍ରଚେଷ୍ଟାରେ । ମୁକ୍ତ ହସ୍ତରେ ରିକ୍ତହସ୍ତ ହେଉଥିଲେ ବହୁ ସମୟରେ । କିନ୍ତୁ ଭରସାଥିଲା ସବୁବେଳେ ଈଶ୍ୱରଙ୍କ ଉପରେ । ଜନଗହଳିରୁ ସେ

ଯେତେବେଳେ ଫେରୁଥିଲେ ତାଙ୍କ ନିଜ କ୍ଷୁଦ୍ର ପ୍ରକୋଷ୍ଠର ନୁଆଁଣିଆ ଖଟଟି ଉପରକୁ, ଅତୀତର କେତେଟି ସ୍ମୃତି ତାଙ୍କ ନିର୍ଜନତାର ଚିର ସହଚର ହୋଇ ରହୁଥିଲା । ସେଥିରେ ସେ ମହୀୟାନ ହୋଇ ଉଠୁଥିଲେ । ସେ ଦେଇଯାଇଛନ୍ତି ସାହାଯ୍ୟ ସମସ୍ତଙ୍କୁ, ପାଇଛନ୍ତି କ୍ୱଚିତ ବା କିମ୍ବୁତ ।



ଏମନ୍ତେ କେତେ ଦିନ ଗଲା । ଖୁଦୁରୁକୁଣି ଓଷା ହେଲା ॥
ଝିଲାଇ ଚଅପୋଇ ବାଳୀ । ଯାଉଛୁ ହଜିଲାର ହେଳି ॥
ଖୁଦ କୁଣ୍ଡରେ ପିଠା କରି । ଖୁଦ ତଣ୍ଡୁଳ ପୁର କରି ॥
ଓଷା କୋଠିରେ ଯାଇ ବସି । ଭାଇଙ୍କ ଶୁଭ ଯେ ମନାସି ॥

# ଲବ-କୁଶ ଦିହେଁ ଯାଆଁଳା ଭାଇ

ବିଗ୍ରୃରପତି ଶ୍ରୀ ରାଜ କିଶୋର ଦାସ
(ଅବସର ପ୍ରାପ୍ତ)

"ଲବ କୁଶ ଦିହେଁ ଯାଆଁଳା ଭାଇ
ସାନ ବଡ଼ ବାରି ହୁଅଇ ନାହିଁ"

**ଲ**ବ କୁଶଙ୍କର ବିଷୟଟି ଅବଶ୍ୟ ରାମାୟଣର, ହେଲେ ଶହେ ବର୍ଷ ତଳେ ଜନ୍ମ ଗ୍ରହଣ କରି ଯେଉଁ ଦୁଇ ଜଣ ଓଡ଼ିଆ ଯାଆଁଳା ଭାଇ ଲବ କୁଶ ପରି ସଂକଳ୍ପବଦ୍ଧ ହୋଇ ଓଡ଼ିଶାର ସାମାଜିକ ଜୀବନକୁ ତଥା ଭାରତୀୟ ଜାତୀୟ ଜୀବନକୁ ସମୃଦ୍ଧ କରିଥିଲେ, ସେ ଦୁଇଜଣ ହେଲେ ପ୍ରାତଃ ସ୍ମରଣୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ମିଷ୍ଟର ଭୁବନାନନ୍ଦ ଦାସ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ବିଖ୍ୟାତ ଓକିଲ ଓ ଓଡ଼ିଶା ହାଇକୋର୍ଟର ଆଡ଼ଭୋକେଟ୍ ଜେନେରାଲ । ସେ ଥିଲେ ଜାତୀୟ ଗୌରବ ମିଷ୍ଟର୍ ମଧୁସୂଦନ ଦାସଙ୍କର ପଟ୍ଟଶିଷ୍ୟ । ମିଷ୍ଟର ଭୁବନାନନ୍ଦ ଦାସ.ବିଲାତର ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରୁ ବିଦ୍ୟୁତ୍ ଇଞ୍ଜିନିୟରିଂରେ ଶ୍ରେଷ୍ଠ ଡ଼ିଗ୍ରୀ ହାସଲ କରି ଓଡ଼ିଶାକୁ ଫେରିବା ପରେ ଓଡ଼ିଶା ତଥା ଭାରତରେ ବିଦ୍ୟୁତ କେନ୍ଦ୍ରମାନ ପ୍ରତିଷ୍ଠା କରିବାରେ ମୁଖ୍ୟ ସହାୟକ ହୋଇଥିଲେ । ଏ ଦୁଇ ଯାଆଁଳା ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଓ ବି ଦାସ ନାମରେ ଖୁବ୍ ପରିଚିତ ଥିଲେ ଓ ଭାରତର **ସ୍ୱାଧୀନତା** ଆନ୍ଦୋଳନ ତଥା ତତ୍କାଳୀନ ଜାତୀୟ କଂଗ୍ରେସରେ ଯୋଗଦାନ କରିଥିଲେ । ସମାଜ ସେବା, ଦେଶ ସେବା ଓ ଭାରତ **ସ୍ୱାଧୀନତା** ପାଇଁ ସ୍ୱାମୀ ବିଚିତ୍ରାନନ୍ଦ ଓ ଭୁବନାନନ୍ଦଙ୍କର ଅବଦାନ ଜାତିର ଇତିହାସ ପୃଷ୍ଠାରେ ଅବିସ୍ମରଣୀୟ ହୋଇ ରହିବ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଏଇ ଦୁଇ ଭାଇଙ୍କର ଉଦ୍ୟମ ଥିଲା ଉଲ୍ଲେଖଯୋଗ୍ୟ ।

ବିଚିତ୍ରାନନ୍ଦ ଓ **ଭୁବନାନନ୍ଦ** ବଡ଼ଭାଇଙ୍କ ନାଁ ରାଘବାନନ୍ଦ । ଘର ତାଙ୍କର ପୁରୀ ଜିଲ୍ଲାର ଗାଁ କୁରୁଣ୍ଡିପୁର । ଆମ ଗାଁ ବାଗଲପୁରଠାରୁ ତାହା ପ୍ରାୟ ଦୁଇ କିଲୋମିଟର । ରାଘବାନନ୍ଦଙ୍କ ପୁଅ ରାଧାକୃଷ୍ଣ ମୋର ବାଲ୍ୟ ବନ୍ଧୁ ଥିଲେ । ଏଥିପାଇଁ ତାଙ୍କ ଘରକୁ ମୁଁ ଯାଉଥିଲି ଓ ତାଙ୍କ ପରିବାର ସହିତ ମୋର ଘନିଷ୍ଠତା ଥିଲା । ସମୟ କ୍ରମେ ଏହି ପରିବାର କଟକର ତଗରପଡ଼ାଠାରେ ତାଙ୍କର ସ୍ଥାୟୀ ବାସଗୃହ ନିର୍ମାଣ କଲେ । ତାଙ୍କର ଏହି ବାସଗୃହ ଦେଶ ସେବା ଓ ସମାଜ ସେବାର ଏକ ମୁଖ୍ୟ କର୍ମସ୍ଥଳୀରେ ପରିଣତ ହୋଇଥିଲା । ଏପରିକି ଏହି ବାସ ସ୍ଥାନକୁ "eternal guest house" ବା ଚିର ଅତିଥିଶାଳା ବୋଲି କୁହାଯାଉଥିଲା । ବିଚିତ୍ରାନନ୍ଦ ଓ ଭୁବନାନନ୍ଦ ଜାତୀୟ କଂଗ୍ରେସ ତଥା ଜାତୀୟ ଆନ୍ଦୋଳନର ଦୁଇଟି ମୁଖ୍ୟ ସ୍ତମ୍ଭ ଥିଲେ । ସ୍ୱାମୀ ବିଚିତ୍ରାନନ୍ଦ ୧୯୩୭ ମସିହାରେ ଓଡ଼ିଶା ବିଧାନ ସଭାକୁ କଂଗ୍ରେସ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ ଓ ମିଷ୍ଟର୍ ଭୁବନାନନ୍ଦ ବହୁ ବର୍ଷ କେନ୍ଦ୍ର ଆସେମ୍ବ୍ଲି, ଭାରତର ଶାସନ ବିଧାୟକ ସଭା ଓ ପାର୍ଲାମେଣ୍ଟର ସଦସ୍ୟ ହୋଇଥିଲେ । ଡକ୍ଟର ହୃଦୟନାଥ କୁଂଜରୁ, ପଣ୍ଡିତ ମଦନ ମୋହନ ମାଲବ୍ୟ, ପଣ୍ଡିତ ମୋତିଲାଲ ନେହେରୁ ଓ ତତ୍କାଳୀନ ବହୁ ଭାରତୀୟ ନେତା ଓ ପାର୍ଲାମେଣ୍ଟାରିଆନଙ୍କର ସେ ଥିଲେ **ସମସାମୟିକ**। ପାର୍ଲାମେଣ୍ଟାରିଆନ୍ ଭାବରେ ତାଙ୍କର ଦୀର୍ଘ ବର୍ଷର ଅଭିଜ୍ଞତା ପାଇଁ ତାଙ୍କୁ Father of the Indian Parliament କୁହାଯାଏ । ଯେତେବେଳେ ଖୁବ୍ ଅଳ୍ପ ସଂଖ୍ୟକ ଓଡ଼ିଆ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାଉଥିଲେ ସେମାନଙ୍କ ମଧ୍ୟରେ ଭୁବନାନନ୍ଦ ଥିଲେ ଅନ୍ୟତମ । ବିଲାତରେ ତାଙ୍କର **ସମସାମୟିକ** ଥିଲେ ବିଶିଷ୍ଟ ଓଡ଼ିଆ, ପ୍ରଫେସର ପ୍ରାଣକୃଷ୍ଣ ପରିଜା, ମିଃ ଶ୍ୟାମା ଚରଣ ତ୍ରିପାଠୀ ଓ ମିଷ୍ଟର୍ ସଚ୍ଚିଦାନନ୍ଦ ରାୟ । ସେତିକିବେଳେ ତାଙ୍କର ଆଉ ଜଣେ ବଂଧୁ ସାରଙ୍ଗଧର ଦାସ ଆମେରିକାର କାଲିଫର୍ଣ୍ଣିଆଠାରେ କୃଷି ବିଜ୍ଞାନରେ ଉଚ୍ଚତମ ଡ଼ିଗ୍ରୀ ପାଇଁ ଯାଉଥିଲେ । ବିଲାତରେ ମିଃ ଦାସ ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ ପଢୁଥିଲାବେଳେ ପ୍ରଫେସର ପରିଜା ଓ ମିଷ୍ଟର୍ ତ୍ରିପାଠୀ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ମିଃ ରାୟ ଅକ୍ସ୍‌ଫୋର୍ଡ ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ଏହି ସ୍ରୀରି ବନ୍ଧୁଙ୍କ ମଧ୍ୟରେ ଘନିଷ୍ଠ ଆତ୍ମୀୟତା ଥିଲା । ଜାତୀୟ ସଂଗ୍ରାମର ସ୍ରୋତରେ ନିଜର ଜୀବନକୁ ଉତ୍ସର୍ଗ କରିବା ସଙ୍ଗେ ସଙ୍ଗେ ତାଙ୍କର ବିଦ୍ୟୁତ୍ ଇଞ୍ଜିନିୟରିଂ ସମସ୍ତ ଜ୍ଞାନକୁ ସେ ଓଡ଼ିଶା ତଥା ଓଡ଼ିଶା .ବାହାରେ ବିଦ୍ୟୁତ୍ ଶକ୍ତିର ଉନ୍ନତି ପାଇଁ ଉପଯୋଗ କରିଥିଲେ । ପୁରୀ ଇଲେକ୍ଟ୍ରିକ୍ ସପ୍ଲାଇ କମ୍ପାନୀ ତାଙ୍କର ଅନ୍ୟତମ କୃତୀ । ମିଷ୍ଟର୍ ବି.ଦାସ ତାଙ୍କ ଜୀବନର ବିଶେଷ ଭାଗ ଦିଲ୍ଲୀଠାରେ କଟାଇଥିଲେ । ଓଡ଼ିଶାର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ନେତା ସ୍ୱର୍ଗତ ନିରଞ୍ଜନ ପଟ୍ଟନାୟକଙ୍କର

ଣାଙ୍କୁ ସେ ବିବାହ କରିଥିଲେ । ପାର୍ଲାମେଣ୍ଟରେ ବିଭିନ୍ନ ଯରେ ଆଲୋଚନାରେ ସେ ମୁଖ୍ୟ ଭାଗ ନେଉଥିଲେ । ଶଷ କରି ଶ୍ରମିକମାନଙ୍କର ଓ ଗୋଟି ଶ୍ରମିକମାନଙ୍କର ଚାଳନ ତଥା ଆଇନ ବିଷୟରେ ତାଙ୍କର ସ୍ୱତନ୍ତ୍ର ଚର୍ଚ୍ଚା ) । ୧୯୨୯ ମସିହାରେ ଜେନେଭାଠାରେ ଅନୁଷ୍ଠିତ ଇଥିବା Forced Labour Convention ଜଣେ ଭାରତୀୟ ସଭ୍ୟ ଭାବରେ ସେ ଜେନେଭା ଥିଲେ । ପୂର୍ବତନ ଗଡଜାତମାନଙ୍କରୁ ହୀନ ଗୋଟି ପ୍ରଥାର ଲାପ ପାଇଁ ଶାସନ ବିଧାୟକ ସଭାରେ ସେ ଏକ ମର୍ମସ୍ପର୍ଶୀ ୟ ଉପସ୍ଥାପନ କରିଥିଲେ ଓ ଏହା ସମାଜକୁ କିପରି ରେ କଳୁଷିତ କରୁଛି, ତାହା ଦର୍ଶାଇଥିଲେ । ଏହି ଦିନଟି ଶାସନ ବିଧାୟକ ସଭାର ୧୯୪୭ ମସିହା ମେ' ମାସ ଲାର ଅଧିବେଶନ । ବିଶ୍ୱ ଶ୍ରମିକ ଦିବସରେ ତାଙ୍କର ଏହି ରଣା ଥିଲା ଏକ ପ୍ରତୀକ ପୂର୍ଣ୍ଣ ପ୍ରବଚନ । ତାଙ୍କ ପରି ବାନ ପାର୍ଲାମେଣ୍ଟେରିଆନ୍‌ଙ୍କ ପାଇଁ ଓଡ଼ିଶା ଗର୍ବ ଅନୁଭବ ରି । ସ୍ୱର୍ଗତଃ ନିରଞ୍ଜନ ପଟ୍ଟନାୟକଙ୍କର ମୁଁ ସାନ ସନ୍ତୁ । ଥିପାଇଁ ସେ ଥିଲେ ମୋର ସମ୍ପର୍କୀୟ । ତାଙ୍କ ସହିତ ମୋର ଆତ୍ମୀୟତା ଥିଲା । ସେ ଥିଲେ ଭାରି ମେଳାପୀ ଓ ଶୀଳ ବ୍ୟକ୍ତି । ଦେଶର ଜଣେ ଖ୍ୟାତି ସମ୍ପନ୍ନ ectrical Consultant Engineer, ପୁଣି କାଳ ପାର୍ଲାମେଣ୍ଟର ସଦସ୍ୟ । କିନ୍ତୁ ବ୍ୟବହାରରେ ସେ ଲ ଖୁବ୍ ଅମାୟିକ, ଖୁବ୍ ସରଳ । ଯାଅଁଳା ଭାଇ ସ୍ୱାମୀ ତ୍ରାନନ୍ଦଙ୍କ ଜୀବନ ଥିଲା ସେବା ଓ ତ୍ୟାଗର ଜୀବନ । ଙ୍କ ପାଖରେ ସେ ଥିଲେ ସମ୍ମାନନୀୟ "ସ୍ୱାମୀଜୀ" । ସେ ଉଚ୍ଚକୋଟୀର ଆଇନଜ୍ଞ ଥିଲେ ଓ ବ୍ୟକ୍ତିଗତ ଜୀବନରେ ଥିଲେ ଖୁବ୍ ନୀତିବାଦୀ । ମଧ୍ୟ ବୟସରେ ପତ୍ନୀଙ୍କୁ ହରାଇ ସେ ସନ୍ନ୍ୟାସୀର ଜୀବନ ଯାପନ କରୁଥିଲେ । ସେ ଅବସର ସମୟରେ ଗେରୁଆ ଲୁଗା, ଗେରୁଆ ପଞ୍ଜାବୀ ଓ ଗେରୁଆ ଗାନ୍ଧି ଟୋପି ପିନ୍ଧୁଥିଲେ । ସେ ଖୁବ୍ ସ୍ପଷ୍ଟବାଦୀ ଥିଲେ ଓ ନିଜର ମନୋଭାବକୁ ଅକପଟ ଭାବରେ ପ୍ରକାଶ କରୁଥିଲେ । ସମାଜରେ ଦଳିତ, ଅବହେଳିତ ଓ ନିର୍ଯ୍ୟାତିତଙ୍କ ପାଇଁ ତାଙ୍କ ପ୍ରାଣ ସଦାସର୍ବଦା ବ୍ୟଥିତ ହେଉଥିଲା । ଯେ କୌଣସି ସମାଜମଙ୍ଗଳ କାର୍ଯ୍ୟ ତାଙ୍କର ଆଶୀର୍ବାଦ ଲାଭ କରୁଥିଲା । କଟକ ତଗରପଡ଼ାଠାରେ ସେ ଅନାଥା ମହିଳାଙ୍କ ପାଇଁ ଗୋଟିଏ ଅନାଥ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଜଣେ ପ୍ରସିଦ୍ଧ ଆଡ଼ଭୋକେଟ୍ ଓ ଆଡ଼ଭୋକେଟ୍ ଜେନେରାଲ ଭାବରେ ସେ ବହୁ ଅର୍ଥ ଉପାର୍ଜନ କରିଥିଲେ ମଧ୍ୟ ଅର୍ଥର ଲାଳସା ତାଙ୍କୁ ଲେଶ ମାତ୍ର ସ୍ପର୍ଶ କରି ନ ଥିଲା । ଆଇନ ବ୍ୟବସାୟ କଲାବେଳେ ମୁଁ ବହୁବାର ତାଙ୍କର ସାନ୍ନିଧ୍ୟ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଛି । ଘଟଣା ଚକ୍ରରେ ମୁଁ ଓଡ଼ିଶା ହାଇକୋର୍ଟର ବିଚାରପତି ଥିବା ବେଳେ ପୂଜ୍ୟ ସ୍ୱାମୀଜୀ କେତେକ ମକଦ୍ଦମା ମୋର ଇଜଲାସରେ ପରିଚାଳନା କରିଥିଲେ । ଏହା ଥିଲା ମୋ ପାଇଁ ପରମ ସ୍ମୃତି ଓ ସୌଭାଗ୍ୟର କଥା । ଏହା ମୋର ଚିର ସ୍ମୃତି ହୋଇ ରହିଛି ଓ ରହିବ ।

ସ୍ୱାମୀ ବିଚିତ୍ରାନନ୍ଦ ଓ ମିଷ୍ଟର ଭୁବନାନନ୍ଦ ଦୁଇ ମହାନ୍ ଯାଅଁଳା ଭାଇଙ୍କର ଜନ୍ମ ହେବାର ଶହେ ବର୍ଷ ହୋଇଗଲା । ଏହି ଉପଲକ୍ଷେ ଏଇ ଦୁଇ ମହାନ୍ ଆତ୍ମାଙ୍କ ପ୍ରତି ମୁଁ ମୋର ଅନ୍ତରର ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ନିବେଦନ କରୁଛି ।



ଅନ୍ତିମ ଶଯ୍ୟାରେ ଶ୍ରୀମତୀ ରୁକ୍ମିଣୀ ଦେବୀ

# ଆମ ସମୟର ଦୁଇଟି ବିଶିଷ୍ଟ ସମାଜ ସେବୀ

ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର

ସ୍ୱର୍ଗତ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଏବଂ ତାଙ୍କର ଯମଜ ସ୍ୱର୍ଗତ ଭୁବନାନନ୍ଦ ଦାସ ଉଭୟେ ଓଡ଼ିଶାର ମୁଖୋଜ୍ଜ୍ୱଳକାରୀ ମାନନୀୟ ନେତା । ସେ ଦୁହେଁ ଯେତେ ଦିନ ଯାଏ ଜୀବିତ ଥିଲେ ତାଙ୍କ ଭଳି ଅତିଥି ପରାୟଣ ଲୋକ କଟକ ସହରରେ ବିଶେଷ କେହି ନଥିଲେ । ଭାରତର ବିଶିଷ୍ଟ ଜନସେବୀ, ବିଦ୍ୱତ୍, ନେତୃସ୍ଥାନୀୟ ଲୋକେ କଟକ ଆସିଲାବେଳେ ସାଧାରଣତଃ ଏହି ଦୁଇ ଭାଇଙ୍କର ଅତିଥି ହୋଇ ରହୁଥିଲେ । ଲକ୍ଷ୍ୟ କରିବାର କଥା ଯେ ଏହି ଦୁଇ ଯମଜ ଭାଇଙ୍କ ଭିତରେ ଯେଉଁ ସ୍ନେହ ଏବଂ ବନ୍ଧୁଭାବ ଆଜୀବନ ରହିଥିଲା ତାହା ସମସ୍ତଙ୍କୁ ଚମତ୍କୃତ କରିଥିଲା । ସେ ଦୁହିଁଙ୍କର ସାନଭାଇ ଭାବରେ ସେମାନଙ୍କର ସମ୍ପର୍କରେ ଆସିବାର ବହୁ ସୁବିଧା ମୁଁ ପାଇଛି । ସେ ସମସ୍ତ କଥା ଏଠାରେ ଲିପିବଦ୍ଧ କଲେ ଗୋଟିଏ ଗ୍ରନ୍ଥ ହେବ ତଥାପି ଯେତେଦୂର ସମ୍ଭବ ସଂକ୍ଷିପ୍ତ ଭାବରେ ମୋର ଅନୁଭୂତିର କିଛି ଅଂଶ ଏଠାରେ ବର୍ଣ୍ଣନା କରୁଛି ।

୧୯୨୮ ମସିହାରେ ରେଭେନ୍ସା କଲେଜର ଛାତ୍ର ଥିଲାବେଳେ ସ୍ୱର୍ଗତ ଅଧ୍ୟାପକ ନାରାୟଣ ମିଶ୍ରଙ୍କ ନେତୃତ୍ୱରେ ମୁଁ ଏବଂ ମୋର ସମସାମୟିକ ପ୍ରାୟ ୨୦ ଜଣ ଛାତ୍ର ବନ୍ଧୁ କଲେଜ ପକ୍ଷରୁ ଉତ୍ତର ଭାରତ ଭ୍ରମଣରେ ଯାଇଥିଲୁ । ଉତ୍ତର ଭାରତର ବହୁ ସ୍ଥାନ ଯଥା:—ଆହ୍ଲାବାଦ, ଲକ୍ଷ୍ନୌ, ମଥୁରା, ବୃନ୍ଦାବନ ଏପରି ବହୁ ସହର ଦେଖି ଶେଷରେ ପହଞ୍ଚିଲୁ, ଦିଲ୍ଲୀ ସହରରେ । ଦିଲ୍ଲୀ ରେଲୱେ ଷ୍ଟେସନରେ ପହଞ୍ଚିଲା ମାତ୍ରେ ସ୍ୱର୍ଗତ ବି.ଦାସଙ୍କର କନିଷ୍ଠ ଶାଳକ ସ୍ୱର୍ଗତ ଅଭିମନ୍ୟୁ ପଟ୍ଟନାୟକ ଦିଲ୍ଲୀ ରେଲୱେ ଷ୍ଟେସନରେ ଅପେକ୍ଷା କରିଥିଲେ, ଆମ ସମସ୍ତଙ୍କୁ ବି.ଦାସଙ୍କ ବାସ ଭବନକୁ ନେବା ପାଇଁ । ବି.ଦାସ ସେତେବେଳେ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଏବଂ ସେ ନୂଆ ଦିଲ୍ଲୀରେ ରହୁଥିଲେ । କିନ୍ତୁ ଆମେ ଏତେଗୁଡ଼ିଏ ଛାତ୍ର ଏକା ସାଙ୍ଗରେ ଯାଇଥିବା ହେତୁ ଭୁବନାନନ୍ଦ ବାବୁଙ୍କୁ କୌଣସି ରକମ ଅସୁବିଧାରେ ପକାଇବାକୁ ଚାହିଁଲୁ ନାହିଁ । ସେତେବେଳେ ଅତି ଶସ୍ତା ସମୟ, ଆମେ ରେଲଷ୍ଟେସନ ପାଖ ଏକ ହୋଟେଲରେ ରାତିଟି କଟାଇଲୁ । ବି.ଦାସଙ୍କ ଆତ୍ମୀୟ ଅଭିମନ୍ୟୁ ବାବୁଙ୍କୁ ଆମର ଅନୁରୋଧ ଥିଲା ଯେ ଆମେ ସକାଳ ଓଳି ଖିଆପିଆ କରି କେନ୍ଦ୍ର ଆସେମ୍ବ୍ଲି ଦେଖିବାକୁ ଯିବୁ । ଆମ ଲାଗି ୨୦ଟି ଦର୍ଶକ ଟିକେଟ ବି.ଦାସଙ୍କୁ କହି ଯୋଗାଡ଼ କରିଥିବେ । ଆମର କାର୍ଯ୍ୟ ନିର୍ଘଣ୍ଟ ମୁତାବକ ଆମେ ଠିକ୍ ୧୨ଟା ବେଳେ କେନ୍ଦ୍ର ଆସେମ୍ବ୍ଲି ଭବନରେ ପହଞ୍ଚିଲୁ । ଅଭିମନ୍ୟୁ ବାବୁ ସେଠାରେ ଆମକୁ ଅପେକ୍ଷା କରିଥିଲେ ଏବଂ ଆମମାନଙ୍କ ପାଇଁ ୨୦ଟି ଦର୍ଶକ ଟିକଟର ବ୍ୟବସ୍ଥା କରାଇଥିଲେ । କେନ୍ଦ୍ର ଆସେମ୍ବ୍ଲିରେ ସେତେବେଳେ ଅପୂର୍ବ ଦୃଶ୍ୟ, ସ୍ୱରାଜ ପାର୍ଟିର ନେତା ପଣ୍ଡିତ ମୋତିଲାଲ ନେହେରୁ ନ୍ୟାସନାଲିଷ୍ଟ ପାର୍ଟିର ନେତା ପଣ୍ଡିତ ମଦନ ମୋହନ ମାଲବୀୟ, ଇଣ୍ଡିପେଣ୍ଡେଣ୍ଟ ପାର୍ଟିର ନେତା ଏମ.ଏ.ଜିନ୍ନା ଏହିଭଳି ଭାରତ ବିଖ୍ୟାତ ରାଜନୀତିଜ୍ଞମାନଙ୍କର ଯୁକ୍ତିତର୍କରେ କେନ୍ଦ୍ର ଆସେମ୍ବ୍ଲି ଗୃହ ମୁଖର । ଏହା ପ୍ରକୃତରେ ଆମମାନଙ୍କ ଭଳି ଅଳ୍ପ ବୟସ୍କ ଛାତ୍ରମାନଙ୍କ ପକ୍ଷରେ ସବୁ ଦିନ ପାଇଁ ମନେ ରହିବା ଭଳି ଏକ ସୁବର୍ଣ୍ଣ ସୁଯୋଗ ଥିଲା । ଅଳ୍ପ ସମୟ ପରେ ଶ୍ରୀଯୁକ୍ତ ବି.ଦାସ ଆମର ଅଧ୍ୟାପକ ନାରାୟଣ ମିଶ୍ରଙ୍କ ସହିତ କଥାଭାଷା କରି ଆମେ ତାଙ୍କ ବାସ ଭବନରେ ରହିବା ପାଇଁ ରାଜି ହୋଇ ନଥିବା ହେତୁ ଗଭୀର କ୍ଷୋଭ ପ୍ରକାଶ କରିଥିଲେ ଏବଂ ଆମମାନଙ୍କ ପାଇଁ କେନ୍ଦ୍ର ଆସେମ୍ବ୍ଲି ହତା ଭିତରେ ଏକ ଟି ପାର୍ଟିର ଆୟୋଜନ କରିଥିଲେ । ଏଥିରେ ସ୍ୱନାମଧନ୍ୟ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ଉପସ୍ଥିତ ଥିଲେ । ପଣ୍ଡିତ ମହାଶୟ କେନ୍ଦ୍ର ଆସେମ୍ବ୍ଲି ଚାରିପଟେ ଥିବା ବିଭିନ୍ନ ଐତିହାସିକ ମୂର୍ତ୍ତି ପ୍ରତି ଆମମାନଙ୍କର ଦୃଷ୍ଟି ଆକର୍ଷଣ କରି ସେଗୁଡ଼ିକ ସମ୍ବନ୍ଧରେ ଆମମାନଙ୍କୁ ବିଶଦ ବିବରଣୀ ଦେଇଥିଲେ । ଏହାଥିଲା ସ୍ୱର୍ଗୀୟ ଭୁବନାନନ୍ଦ ଦାସଙ୍କ ସହିତ ମୋର ପ୍ରଥମ ସାକ୍ଷାତ । ତା'ପରେ ଅନେକ ଦିନ ବିତିଗଲା, ମୁଁ ହିନ୍ଦ୍ ସେବକ ସଂଘର ଜଣେ ଆଜୀବନ ସଭ୍ୟ ଭାବରେ ୧୮୩୭ମସିହାରେ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଏବଂ ଆମ ଅନୁଷ୍ଠାନର ଉପସଭାପତି ସ୍ୱର୍ଗୀୟ ଏନ.ଏମ.ଯୋଶୀଙ୍କର ସହକାରୀ ଭାବରେ ଦିଲ୍ଲୀରେ ରହୁଥିଲି । ଭୁବନାନନ୍ଦ ବାବୁଙ୍କ ଘର ଏନ୍.ଏମ୍.ଯୋଶୀଙ୍କ ଘର ପାଖରେ ଥିଲା ଏବଂ ପ୍ରାୟ ଅଧିକାଂଶ ସମୟ ଭୁବନାନନ୍ଦ ବାବୁ ଏନ୍.ଏମ୍.ଯୋଶୀଙ୍କ ଘରେ ପହଞ୍ଚି କହନ୍ତି (ସେ ତୁମେମାନେ ତ 'ଘାସ ଖାଦକ' (ନିରାମିଷ ଭୋଜୀମାନଙ୍କୁ ସେ ସେହି ଆଖ୍ୟାରେ ଅଭିହିତ କରୁଥିଲେ) ଶ୍ୟାମ ସୁନ୍ଦର ତୁମ ଘରର ରୋଷେଇ ସବୁବେଳେ ଖାଇ ପାରିବ ନାହିଁ । ସେ ଆମିଷାଶୀ,

ତେଣୁ ମୁଁ ତାଙ୍କୁ ସାଙ୍ଗରେ ନେଇ ଯାଉଛି ସେ ମୋ ଘରେ ଖାଇବ । ଦିଲ୍ଲୀରେ ସେଥର ମୋର ରହଣି ୩ ମାସ ଭିତରୁ ବହୁଦିନ ମୁଁ ତାଙ୍କ ଘରେ ରାଜା ଆଡ଼ମ୍ବରରେ ଖାଇଛି । ସେତେବେଳେ ତାଙ୍କ ସହିତ ଯେଉଁ କଥାଭାଷା ହୁଏ ତାହା ଲେଖିବା ପାଇଁ ଏହି କ୍ଷୁଦ୍ର ପ୍ରବନ୍ଧରେ ସ୍ଥାନ କାହିଁ ? ଯେତେଥର ମୁଁ କାର୍ଯ୍ୟ ଉପଲକ୍ଷରେ ଦିଲ୍ଲୀ ଯାଏ ଭୁବନାନନ୍ଦ ବାବୁଙ୍କୁ ମୋର ଭକ୍ତିପୂର୍ଣ୍ଣ ସମ୍ମାନ ଜ୍ଞାପନ କରେ ଏବଂ ତାଙ୍କ ଠାରୁ ଯେଉଁ ସ୍ନେହ ସମ୍ବର୍ଦ୍ଧନା ପାଏ ତାହା ମୋ ଜୀବନର ଏକ ଅମୂଲ୍ୟ ସମ୍ପଦ । ସ୍ୱର୍ଗୀୟ ଭୁବନାନନ୍ଦ ବାବୁଙ୍କ ବିୟୋଗ ପରେ ଓଡ଼ିଶା ଜଣେ ନିଖିଳ-ଭାରତୀୟ ନେତାଙ୍କୁ ହରାଇଛି । ଆମର ଭାରତୀୟ ସମ୍ବିଧାନ ଯେତେବେଳେ ଆଲୋଚିତ ହେଉଥିଲା ସେତେବେଳେ ଓଡ଼ିଶାର ବହୁ ବିଶିଷ୍ଟ ଲୋକଙ୍କ ମଧ୍ୟରେ ଭୁବନାନନ୍ଦ ବାବୁ ସମ୍ବିଧାନ ପ୍ରଣୟନ ସଭାର ରାଜସ୍ୱ ତଥା ଅନ୍ୟାନ୍ୟ ଟିକସ ସମ୍ପର୍କୀୟ ଆଲୋଚନାରେ ଅଂଶ ଗ୍ରହଣ କରି ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଥିଲେ । କେବଳ ସେତିକି ନୁହେଁ ସେ କେନ୍ଦ୍ର ଆସେମ୍ବ୍ଲିର ପ୍ରାଚୀନତମ ସଭ୍ୟ ଭାବରେ ପରିଚିତ ଥିଲେ ଏବଂ ବହୁ ଦିନ କେନ୍ଦ୍ର ସରକାରଙ୍କ ଆୟବ୍ୟୟ ସମୀକ୍ଷା କମିଟିର ଚେୟାରମ୍ୟାନ ଥିଲେ ।

ସ୍ୱାମୀ ବିଚିତ୍ରାନନ୍ଦ ଦାସ ଯମଜ ହେଲେହେଁ ଭୁବନାନନ୍ଦ ବାବୁଙ୍କର ବଡ ଭାଇ, ଓଡ଼ିଶାର ଆଇନଜୀବୀ ମହଲରେ ଅନେକ ଦିନ ପର୍ଯ୍ୟନ୍ତ ସେ ଜଣେ ବିଶିଷ୍ଟ ନେତା ଭାବରେ ପରିଚିତ ଥିଲେ । ସେ ଥିଲେ କୁଳବୃଦ୍ଧ ସ୍ୱର୍ଗୀୟ ମଧୁସୂଦନ ଦାସଙ୍କର ପଟ୍ଟଶିଷ୍ୟ । ଏକାନ୍ତ ସ୍ଥବିର ହେବା ପର୍ଯ୍ୟନ୍ତ ସେ ପ୍ରତିବର୍ଷ ମିଷ୍ଟର ଦାସଙ୍କ ଶ୍ରାଦ୍ଧ ଦିବସରେ ଗୋରା କବରରେ ତାଙ୍କ ସମାଧିପୀଠରେ ଉପସ୍ଥିତ ରହୁଥିଲେ । ପର ଜୀବନରେ ସେ ଯେତେବେଳେ କୁଳବୃଦ୍ଧ ଆଖ୍ୟା ପାଇ ୮୯ ବର୍ଷରେ ପଦାର୍ପଣ କଲେ, ସେତେବେଳେ କଟକ ତଥା ଓଡ଼ିଶାର ଶିକ୍ଷିତ ସମାଜରେ ସେ ଜଣେ ଅତି ପରିଚିତ ନେତା ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ, ଅଳ୍ପ ବୟସରେ ବିପତ୍ନୀକ ହୋଇଥିବା ହେତୁ ତାଙ୍କର ସନ୍ତାନ ସନ୍ତତି ମଧ୍ୟରେ କେବଳ ଗୋଟିଏ ଝିଅ ଏବଂ ଭୁବନାନନ୍ଦ ବାବୁଙ୍କଠାରୁ ଦତ୍ତ କରି ଆଣିଥିବା ପୁଅ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ । ତାଙ୍କର ପ୍ରକୃତରେ ଥିଲା "ବସୁଧୈବ କୁଟୁମ୍ବକମ୍" ନୀତି, ଅତିଥିମାନଙ୍କ ପାଇଁ ତାଙ୍କର ଥିଲା ଅବାରିତ ଦ୍ୱାର । ସେ ଥିଲେ ଅତି ସରଳ ଏବଂ ମିଷ୍ଟଭାଷୀ । ସେ ଓଡ଼ିଶା ବ୍ୟବସ୍ଥା ସଭାରେ କଟକ ସହରର ନିର୍ବାଚିତ ପ୍ରତିନିଧି ଭାବରେ କାମ କରିଥିଲେ ଏବଂ ଓଡ଼ିଶାରେ ପାରଳା ଗଜପତିଙ୍କ ମୁଖ୍ୟମନ୍ତ୍ରୀତ୍ୱ ଚାଲିଥିଲାବେଳେ କେତେ ଦିନ ପାଇଁ ବିରୋଧୀ ଦଳର ନେତା ମଧ୍ୟ ଥିଲେ । ସେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ସରକାରଙ୍କ ପ୍ରଥମ ଆଡଭୋକେଟ ଜେନେରାଲ ଥିଲେ ଏବଂ ବହୁଦିନ ସେହି ଦାୟିତ୍ୱ ବହନ କରିଥିଲେ । ତାଙ୍କର ଜନ୍ମ ଶତାବ୍ଦୀ ଉତ୍ସବରେ ମୁଁ ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଅନ୍ତରର ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରୁଅଛି ।



ରାଜ୍ୟ ଯୋଜନା ବୋର୍ଡ଼ର ପ୍ରଥମ ବୈଠକରେ ମୁଖ୍ୟମନ୍ତ୍ରୀ

# ଲବ ଓ କୁଶ

ନିତ୍ୟାନନ୍ଦ ମହାପାତ୍ର

ମୁଁ ତାଙ୍କୁ ଚିହ୍ନି ନଥିଲି । ଯେମିତି ଜାଣିଲି ଦୁଇ ଜଣ ଓଡ଼ିଶାର ପ୍ରସିଦ୍ଧ ଲୋକ ଯାଆଁଳା ହୋଇ ଜନ୍ମ ନେଇଥିଲେ ସେତେବେଳେ ମୋର ମନେ ପଡ଼ି ଯାଇଥିଲା ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ପାଠର ସେହି ପଦଟି—

ଲବ କୁଶ ଦୁହେଁ ଯାଆଁଳା ଭାଇ,
ସାନ ବଡ଼ ବାରି ହୁଅଇ ନାହିଁ ।

ବାରି ନହେଲେ ମଧ୍ୟ ବିଚିତ୍ରାନନ୍ଦ ଆଗ ଭୁବନାନନ୍ଦ ପଛ । ପଛଙ୍କ ସାଙ୍ଗରେ ମୋର ଚିହ୍ନା ପରିଚୟ ନଥିଲା । କେବଳ ତାଙ୍କ ନାମ ଶୁଣିଥିଲି ଓ ଛପାଫଟୋ ଦେଖିଥିଲି । ସେ ବହୁ ପିଲାଦିନର କଥା । ପଣ୍ଡିତ ନିଳକଣ୍ଠ ଓ ଭୁବନାନନ୍ଦ ଦାସ ଯେତେବେଳେ କେନ୍ଦ୍ର ଆସେମ୍ବ୍ଲିକୁ ପ୍ରାର୍ଥୀ ହୋଇଥିଲେ ସେତେବେଳେ ମୋର ଦାଦି ସ୍ୱର୍ଗତ ସୀତାକାନ୍ତ ମହାପାତ୍ର ଭଦ୍ରକ ସବ୍‌ଡିଭିଜନ ପାଇଁ ପ୍ରଚାରର ଦାୟିତ୍ୱ ନେଇଥିଲେ । ସେତିକିବେଳେ ମୁଁ ତାଙ୍କର ଛବି ସହ ପ୍ରଚାର ପତ୍ର ପଢ଼ିଥିଲି । ସେତିକିବେଳେ ମୁଁ ଜାଣିଥିଲି ଯେ ସେ ଇଞ୍ଜିନିୟରିଂ ପାଠ ପଢ଼ିଥିଲେ । ମାତ୍ର ଚାକିରି ଛାଡ଼ି ସେ ରାଜନୀତିରେ ଯୋଗ ଦେଇଥିଲେ ବୋଲି ତାଙ୍କ ପ୍ରଚାର ପତ୍ରରୁ ଜାଣିପାରିଥିଲି । କିନ୍ତୁ ଇଂରେଜି ଭଲ ଭାବରେ ପଢ଼ିବା ପରେ ଆମ ଘରକୁ ଆସୁଥିବା ସ୍ୱତନ୍ତ୍ର ମତବାଦୀ ଇଂରାଜୀ ଖବର କାଗଜ 'ୟଙ୍ଗ୍ ଉତ୍କଳ' ସହିତ ମୋର ପରିଚୟ ବେଶ୍ ଘଟିଲା । ଏସବୁ କଥା କେତେ ସାଲ୍ ତଳେ ହୋଇଥିଲା ମୋର ମନେ ନାହିଁ ।

ତା'ପରେ ଆସିଲେ ଶ୍ରୀ ବିଚିତ୍ରାନନ୍ଦ ଦାସ ବା ସ୍ୱାମୀଜୀ । ବିଚିତ୍ରାନନ୍ଦ ବାବୁଙ୍କ ସ୍ତ୍ରୀ ମରିଗଲାପରେ ସେ ଯେ ଓଡ଼ିଶା ଦେଶରେ ସ୍ୱାମୀ ନାମ ଘେନି ପ୍ରଚାରିତ ହେଲେ ଏତିକି ମାତ୍ର ମୋତେ ଜଣାଥିଲା । ତାଙ୍କର ଗୋଟିଏ ଝିଅ ଥିଲେ ବୋଧେ ତାଙ୍କ ନାମ ଥିଲା ଲାବଣ୍ୟ । ମୋ ଘର ଭଦ୍ରଖରେ । ସ୍ୱାମୀ ବିଚିତ୍ରାନନ୍ଦ ସେତେବେଳେ କଟକର ଓକିଲ । ତାଙ୍କ ଝିଅ ବାହାଘରକୁ ଆମ ଘରୁ ବେଭାର ଯିବାର ମୋର ବେଶ୍ ମନେ ଅଛି ।

ତା'ପରେ ଅନେକ ଦିନ କଟି ଗଲା । ଦିନ ନୁହେଁ ବର୍ଷ । ମୁଁ ଯେତେବେଳେ ୧୯୩୨ କିମ୍ବା ୩୩ ମସିହାରେ ସ୍ୱାଧୀନତା ସଂଗ୍ରାମୀ ଉତ୍କଳ କଂଗ୍ରେସର ସଭାପତି ଭାବରେ ସ୍ୱେଚ୍ଛାରେ କାରାବରଣ କରିବାକୁ କଟକ ଆସିଲି ସେହିଦିନ ସର୍ବପ୍ରଥମେ ତାଙ୍କୁ ସାକ୍ଷାତ କରିଥିବା କଥା ମୋର ମନେ ପଡୁଛି ।

ଏହାପରେ ଅନେକ ବର୍ଷ ଗୁଡ଼ିଗଲା—ମୋ ବାପା କାନ୍ତକବି ଲକ୍ଷ୍ମୀକାନ୍ତଙ୍କଠାରୁ ସେ ଦୁଇ ତିନି ବର୍ଷ ବଡ଼ ଥିଲେ— ଶ୍ରୀ ବିଚିତ୍ରାନନ୍ଦ ଦାସ । ଦୁହେଁଯାକ କଲିକତାରେ ପାଠପଢୁଥିଲେ । ସେ ବାପାଙ୍କଠାରୁ ଦୁଇତିନି ବର୍ଷ ସିନିୟର ଥିଲେ । ସେହି ସୂତ୍ରରେ ବାପା ଥରେ ସମ୍ପତ୍ତିବାଡ଼ି ମକଦ୍ଦମା ଘେନି ତାଙ୍କ ସହିତ କଥାବାର୍ତ୍ତା ହେବାକୁ ଡ଼ଗର ପ୍ରେସରେ ରହିଲେ—କଟକରେ । ବାପାଙ୍କ ଆସିବା ଖବର ଶୁଣି ସେ ଡ଼ଗର ପ୍ରେସକୁ ଆସି ତାଙ୍କୁ ଦେଖାକରିଥିବା କଥା ମୋର ଏବେବି ମନେ ଅଛି । ଉଭୟଙ୍କର କି ଆନନ୍ଦ ! ଭାବିଲେ ଆଖିରେ ଲୁହ ଆସେ ।

ଏହାପରେ ବର୍ଷ କେତୁଟା ଗଡ଼ିଗଲା । ଭାରତ ସ୍ୱାଧୀନ ହେବାର ଉପକ୍ରମ କରୁଥାଏ । ବିହାରଠାରୁ ସ୍ୱତନ୍ତ୍ର ହୋଇ ଓଡ଼ିଶା ବିଧାନ ସଭା ବସି ସାରିଲାଣି । ପାରଳାଖେମୁଣ୍ଡି ମହାରାଜାଙ୍କ ପରେ ବିଶ୍ୱନାଥ ଦାଶ ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ । ଜାମସେଦପୁର ଟାଟା କମ୍ପାନୀ କାରଖାନାରେ ସେତେବେଳେ ଓଡ଼ିଆଙ୍କ ସଂଖ୍ୟା ବହୁତ ବେଶୀ—ବର୍ତ୍ତମାନ ଭଳି ନଗଣ୍ୟ ନୁହେଁ । ବ୍ରିଟିଶ ଶାସନ ସମୟରେ ଟାଟା କମ୍ପାନୀ ଓଡ଼ିଆ ଭାଷାକୁ ଶିକ୍ଷା କ୍ଷେତ୍ରରେ ଯେପରି ପ୍ରାଧାନ୍ୟ ଦେଉଥିଲେ ସ୍ୱାଧୀନତା ଅଭିମୁଖୀ ବିହାରର କଂଗ୍ରେସ ସରକାର ସେ ସୁବିଧା ପ୍ରାଇମେରୀ ଶିକ୍ଷା କ୍ଷେତ୍ରରୁ ଉଠାଇ ଦେଲେ । ଏହି ଦୁର୍ଯୋଗରୁ ଓଡ଼ିଆ ପିଲାମାନଙ୍କୁ ରକ୍ଷା କରିବା ପାଇଁ ଆମେ ତିନିଜଣ ଲୋକ ବାହାରିଥିଲୁ ଜାମସେଦପୁରକୁ—ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ନେତୃତ୍ୱରେ ମୁଁ ଓ ନବକିଶୋର ଦାସ । ଓଡ଼ିଶା ସରକାରଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ପାଇବାର ଉପାୟ ନପାଇ ଆମେ ଯାଇଥିଲୁ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଘରକୁ । ସେ ସଙ୍ଗେ ସଙ୍ଗେ ଆବଶ୍ୟକୀୟ ଅର୍ଥ ନିଜ ପକେଟରୁ କାଢ଼ି ଦେଇଥିଲେ । ମୋର ମନେ ଅଛି । କେତେ ଟଙ୍କା

ଦେଇଥିଲେ ମୁଁ କହି ପାରିବି ନାହିଁ ମାତ୍ର ତାଙ୍କରି ଦାନରେ ହିଁ ଆମେ ତିନିହେଁ ଜାମସେଦପୁର ଯାଇଥିଲୁ ଓ ଓଡ଼ିଆଙ୍କ ପାଇଁ ଯାହା କରିବାର କଥା ତାହା ସେଠାରେ ସମ୍ଭବ ହୋଇଥିଲା ।

ଏହାପରେ ବିଚିତ୍ରାନନ୍ଦ ବାବୁଙ୍କୁ ମୁଁ ଓଡ଼ିଶା ଆସେମ୍ବ୍ଲିରେ ବକ୍ତୃତା ଦେବାର ଶୁଣିଛି—ଜଣେ ସାମ୍ବାଦିକ ଭାବରେ । ସେ ବ୍ୟଙ୍ଗବକ୍ତା—ଭାବ ପ୍ରବଣତାରେ ସବୁବେଳେ ଉତ୍ସାହପୂର୍ଣ୍ଣ ବାକ୍ୟ ଉତ୍‌ଥାପନ କରିବାରେ ପଟୁ ।

କୁଣ ଆଗରୁ ଖୁଲିଯାଇଥିଲେ । କିନ୍ତୁ କେନ୍ଦ୍ର ଆସେମ୍ବ୍ଲି ଏବଂ ସ୍ୱାଧୀନ ଭାରତର ବିଧାନ ସଭାରେ ସର୍ବାଧିକ କାଳ ସଭ୍ୟ ରହି ସେ ଯେପରି ସୁନାମ ଅର୍ଜନ କରି ଯାଇଛନ୍ତି ତାହା ଅନ୍ୟ କୌଣସି ଭାରତୀୟଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ବିଚିତ୍ରାନନ୍ଦ ବାବୁ ସ୍ୱାଧୀନତା ଉତ୍ତରକାଳରେ ଓଡ଼ିଶାର ପ୍ରଥମ ଆଡ଼ଭୋକେଟ୍ ଜେନେରାଲ ପଦରେ ଅଧିଷ୍ଠିତ ହୋଇଥିଲେ । ଏହାପରେ ସେ ପୁଣି ବିଧାନ ସଭାକୁ ଆସି ବିରୋଧୀ ଦଳ ନେତା ରୂପେ ନିର୍ବାଚିତ ହୋଇଥିଲେ ମାତ୍ର ରାଜନୀତିରୁ ଓହରିଯାଇ ସେ ତାଙ୍କର ସମସ୍ତ ସମୟ ସମାଜ କଲ୍ୟାଣ କାର୍ଯ୍ୟରେ ନିୟୋଗ କରିଥିଲେ ।

ସମାଜ ସେବା କାର୍ଯ୍ୟରେ ନିଜର ସମୟ ଆନନ୍ଦର ସହ କଟାଇ ଦେଇ ସେ ଓଡ଼ିଶାର ପ୍ରକୃତ ସ୍ୱାମୀଜୀ ରୂପେ ନିଜକୁ ପ୍ରତିଷ୍ଠିତ କରିଯାଇଛନ୍ତି । ତାଙ୍କ ସମାଜ ସେବାରେ ମୁଗ୍ଧ ହୋଇ ସ୍ୱର୍ଗତ ଠକ୍‌କରବାପା ତାଙ୍କୁ ସର୍ବପ୍ରଥମେ ସ୍ୱାମୀଜୀ ବୋଲି ଡାକିଥିଲେ । ବନ୍ୟା ପ୍ରପୀଡ଼ିତ ଲୋକଙ୍କ ପାଇଁ ସାହାଯ୍ୟ ଦେବାରେ ସେ ଅଗ୍ରଣୀ ଥିଲେ । କଟକରେ ଓଡ଼ିଶା ଅନାଥାଶ୍ରମ ନାମକ ସମାଜ କଲ୍ୟାଣ ମୂଳକ ଅନୁଷ୍ଠାନ ତାଙ୍କରି କୃତି ।

ଅତି ସରଳ ଜୀବନ ଯାପନ ଥିଲା ତାଙ୍କ ଜୀବନର ଆଦର୍ଶ । ଦୈନନ୍ଦିନ ଜୀବନରେ ସେ ବହୁ ଛାତ୍ର, କର୍ମୀ, ଦୁଃସ୍ଥ ନାଗରିକ ମାନଙ୍କୁ ଅନାୟାସରେ ଦାନ କରି ଆନନ୍ଦ ଲାଭ କରୁଥିଲେ । ତାଙ୍କର ବାସଭବନ ଗୋଟିଏ ଅତିଥିଶାଳା ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଁ ମନ୍ତ୍ରୀ ଥିଲାବେଳେ କଟକ ଯାଇ ତାଙ୍କୁ ସାକ୍ଷାତ କରିଥିଲି । ତାଙ୍କର ଆଶୀର୍ବାଦ ନେଇ ଛଳ ଛଳ ଆଖିରେ ମୁଁ ଫେରି ଆସିଲି ।

ତା'ପରେ ଆଉ ଭେଟ ହୋଇନାହିଁ ।

''କାନ୍ତକୁଟୀର''-
ଡ଼ି/୪, ଲେବର କଲୋନୀ
ଖାରବେଳ ନଗର, ୟୁନିଟ୍-୩
ଭୁବନେଶ୍ୱର-୧



କେନ୍ଦୁଝରରେ ସ୍ୱାଧୀନତା ଦିବସ ପାଳନ ଉପଲକ୍ଷେ ଗୃହମନ୍ତ୍ରୀ ଶ୍ରୀ ସତ୍ପଥୀଙ୍କ ଉଦବୋଧନ ।

# ସ୍ୱାମୀ ବିଚିତ୍ରାନନ୍ଦଙ୍କ ସ୍ମୃତିରେ

ଶ୍ରୀ ନବ କିଶୋର ଦାସ

ସ୍ୱାମୀ ବିଚିତ୍ରାନନ୍ଦ ଦାସ ଜଣେ ବିଦ୍ୱାନ, ବୁଦ୍ଧିମାନ ଓ ବିଚକ୍ଷଣ ଆଡ଼ଭୋକେଟ ଓ ଜାତୀୟବାଦୀ ନେତା ଥିଲେ । ସେ ଓମୁଆ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଉତ୍କଳ ଗୌରବ ମଧୁସୂଦନଙ୍କଠାରୁ ପ୍ରେରଣା ପାଇ କାର୍ଯ୍ୟ କରିଥିଲେ । ଏପରିକି ପରିଣତ ବୟସରେ ମେଦିନୀପୁର ଯାଇ ଉତ୍କଳ ସମ୍ମିଳନୀରେ ସଭାପତି ଭାବରେ ଯୋଗଦେଇଥିଲେ । ତାଙ୍କର ଭାଇ ଭୁବନାନନ୍ଦ ଦାସ ଓ ଗଞ୍ଜାମର ତାଙ୍କ ବନ୍ଧୁ ନିରଞ୍ଜନ ପଟ୍ଟନାୟକ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ବହୁ କାର୍ଯ୍ୟ କରୁଥିଲେ ମଧ୍ୟ ସ୍ୱାମୀ ବିଚିତ୍ରାନନ୍ଦ ଯେପରି ଭାବରେ ତାଙ୍କ ଓକିଲାତି ଆୟ ଦେଶ ମିଶ୍ରଣ ପାଇଁ ଅକାତରରେ ଖର୍ଚ୍ଚ କରୁଥିଲେ । ଦେଶ ପାଇଁ ସେପରି ସ୍ୱାର୍ଥତ୍ୟାଗ କ୍ୱଚିତ୍ ଦେଖିବାକୁ ମିଳେ । ସ୍ୱାମୀ ବିଚିତ୍ରାନନ୍ଦ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ ନେତା ଓ କର୍ମୀମାନଙ୍କର ଆଶ୍ରୟ ଥିଲେ ।

ଶିଳ୍ପ କ୍ଷେତ୍ରରେ ସ୍ୱାମୀଜୀ ମହାତ୍ମା ଗାନ୍ଧିଙ୍କ ଚିନ୍ତାଧାରରେ ଅନୁପ୍ରାଣିତ ହୋଇଥିଲେ । କହିବାକୁ ଗଲେ ମଧୁସୂଦନ ଯେଉଁ ଗ୍ରାମ-ଶିଳ୍ପ ଓ କୁଟୀର ଶିଳ୍ପର ପୁନରୁଦ୍ଧାର ଚାହୁଁଥିଲେ, ମହାତ୍ମା ଗାନ୍ଧି ତାହାହିଁ ଭାରତ ସାରା ପ୍ରଚାର କରୁଥିଲେ ଏବଂ ସ୍ୱାମୀଜୀ ମଧୁସୂଦନଙ୍କର ପଟ୍ଟଶିଷ୍ୟ ହୋଇ ସେହି ନୀତିର ଅନୁସରଣ କରୁଥିଲେ । ଯନ୍ତ୍ରଶିଳ୍ପ କ୍ଷେତ୍ରରେ ସେ ଦେଶକୁ ସ୍ୱାବଲମ୍ବୀ ହେବା ପାଇଁ ଚାହୁଁଥିଲେ । ତେଣୁ ଭାଇ ଭୁବନାନନ୍ଦ ଦାସଙ୍କ ସହିତ ମିଳିତ ହୋଇ ପୁରୀ ବିଜୁଳି କମ୍ପାନୀ ପ୍ରତିଷ୍ଠା କରିବ ଆଗ୍ରହୀ ହୋଇଥିଲେ ।

ସମାଜ ସେବାହିଁ ସ୍ୱାମୀଜୀଙ୍କ ମହାନତାର ବିଶିଷ୍ଟ ଥିଲା । ସେ ଅସହାୟ ମହିଳା ଓ ଶିଶୁମାନଙ୍କ ପାଇଁ ଅନାଥା ସ୍ଥାପନ କରି, ନିଜ ଖର୍ଚ୍ଚରେ ତାହା ପରିଚାଳନା କରୁଥିଲେ ସ୍ୱାମୀ ବିଚିତ୍ରାନନ୍ଦ ବାସ୍ତବରେ ଦୁଃଖୀ, ଦରିଦ୍ର ଜନସାଧାର ପରମ ବନ୍ଧୁ ଓ ଆଶ୍ରୟ ଦାତା ଥିଲେ ।

ମୁଁ ତାହାଙ୍କ ସିରସ୍ତାରେ ଆର୍ଟିକ୍ଲ କ୍ଲର୍କ (Arti (Clerk) ଭାବରେ ଏକ ବର୍ଷ କାଳ ଆଇନ କାର୍ଯ୍ୟରେ ଲାଭ କରି ଓଶୁଆ ହାଇକୋର୍ଟର ଆଡ଼ଭୋକେଟ ହୋଇଥି ମୁଁ ସ୍ୱାମୀଜୀଙ୍କ ସିରସ୍ତାରେ ପ୍ରାୟ ଏକ ବର୍ଷ କାର୍ଯ୍ୟ କରିଥିଲି ସେହି ସମୟ ମଧ୍ୟରେ ପ୍ରାୟ ଦୁଇଶହ ମକଦ୍ଦମା ବିଚିତ୍ରାନନ୍ଦଙ୍କ ସହ ଶୁଣାଣି ଓ ଦରଖାସ୍ତ ପ୍ରସ୍ତୁତିରେ କ କରିଥିଲି । ସେ ତାଙ୍କ ଅଧସ୍ତନ ଆଡ଼ଭୋକେଟମାନଙ୍କୁ କ ଦେଲେ, ଅର୍ଥ ସାହାଯ୍ୟ ମଧ୍ୟ ଦେଉଥିଲେ । ମୁଁ ଆର୍ଟିକ୍ଲ ଭାବରେ କୌଣସି ଫିସ୍ ପାଇବାକୁ ହକଦାର ନହେଲେ ମ ସେ ମୋତେ ନିୟମିତ ମାସକୁ ଅନ୍ୟୁନ ୩ଶହ ଯାଏ ରୋଜଗାର କରାଇ ଦେଉଥିଲେ । ସେ ଆମ ଆଡ଼ଭୋକେଟଙ୍କୁ ଶିକ୍ଷା ଦେଇଥିଲେ ଯେ କୌଣସି ମକ ପାଇଲେ, ମକଦ୍ଦମାର ବିବରଣୀର ଏକ ପୂର୍ଣ୍ଣ ନୋଟ ବିବରଣୀ ଚିଠା ପ୍ରଥମେ ପ୍ରସ୍ତୁତ କରି ନଥିରେ ରା ଦରକାର । କୌଣସି ଆଡ୍‌ଭୋକେଟ ଏଥିରେ ହେଳା କ୍ ସେ ଉକ୍ତ ମକଦ୍ଦମା ନଥି ଦେଖୁ ନଥିଲେ । ତାଙ୍କ ବକ୍ତୃତ ତର୍କ ବିତର୍କ କରିବାରେ ଟିକିଏ ପାଟି ଲାଗୁଥିଲେ ମଧ୍ୟ ତା ତୀକ୍ଷ୍ଣ ମେଧା ଓ ବୁଦ୍ଧି ବିଚକ୍ଷଣତା ଥିଲା ଏବଂ ଅ ବିଷୟରେ ବିଶେଷ ପାରଦର୍ଶିତା ଓ ଗବେଷଣା ଥିଲା । ସିରସ୍ତାର ବିଶେଷତ୍ୱ ଥି[illegible]କଦ୍ଦମା ଚିଠା ପ୍ରସ୍ତୁତିରେ ସତ ଓ ଲେଖାଲେଖିରେ ପାରଦ[illegible]ତା ।

ସ୍ୱାମୀଜୀ ତାହାଙ୍କ ଜୁନିୟରମାନଙ୍କୁ କାର୍ଯ୍ୟ କରିବ ବିଶେଷ ସ୍ୱାଧୀନତା ଦେଉଥିଲେ ଓ ଜୁନିୟରମାନଙ୍କ ମତ ପ୍ରତି ମର୍ଯ୍ୟାଦା ମଧ୍ୟ ଦେଉଥିଲେ । ଏହି ସଂକ୍ରାନ୍ତରେ ମ ମନେ ପଡୁଛି ଯେ ଥରେ ଗୋଟିଏ ବଡ଼ ଟାଇଟଲ ସୁଟ୍ ମତ ଅନୁଯାୟୀ ମିଛ ମାମଲା ବୋଲି ଜାଣି ନେଲା ପରେ ତାର ଅପିଲ ଲଢ଼ିବାକୁ ରାଜି ହେଲା ନାହିଁ । କୌଣସି କ ଦେଲେ, ଅଳ୍ପ ବହୁତ ଫିସ ଦେଉଥିଲେ । ଆମେମ ମକଦ୍ଦମା ପାଇଲେ, ପ୍ରଥମେ ପକ୍ଷକୁ ସବୁ ପଚାରି ବିବ ଟିପୁଥିଲୁ ଏବଂ ତଳକୋର୍ଟ ଓ ଅପିଲ କୋର୍ଟ ରାୟ ବିବରଣୀ ସବୁ ନିକ୍ ନୋଟ୍ କରି ଆଇନ୍‌ପଏଣ୍ଟ ବା କରୁଥିଲୁ ଓ ନଜିର ମଧ୍ୟ ଦେଖୁଥିଲୁ । ସ୍ୱାମୀଜୀ ଏସବୁ ତ ପଢ଼ି ତାଙ୍କର ମତାମତ ଦେଉଥିଲେ । କେ ଆଡ଼ଭୋକେଟ୍ ସାହାଯ୍ୟ ଚାହିଲେ,ସେ ମକଦ୍ଦମା ଫ ପଠାଇ ଦେଉଥିଲେ ଫିସ୍ ସହ ।

ସ୍ୱାମୀଜୀ ସ୍ୱାଧୀନତା ପରେ ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ ଭାବରେ ବିଶିଷ୍ଟ ସମ୍ମାନର ଅଧିକାରୀ ହୋଇଥିଲେ । ସେ ସାରାଜୀବନ କଂଗ୍ରେସର ଅନୁଗତ ସଭ୍ୟ ଥିଲେ । କଂଗ୍ରେସର ବିପତ୍ତି ବେଳେ ଯେତେବେଳେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଯଦୁମଣି ମଙ୍ଗରାଜ ପ୍ରଭୃତି ପାରଳା ମହାରାଜଙ୍କ ସହିତ ମିଳିତ ହୋଇ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିଲେ ସେତେବେଳେ ସ୍ୱାମୀଜୀ ହିଁ ଥିଲେ କଂଗ୍ରେସ ଦଳର ମୁଖ୍ୟ ରକ୍ଷାକର୍ତ୍ତା ।

ସ୍ୱାମୀଜୀଙ୍କ ମୃତ୍ୟୁ ପୂର୍ବରୁ ସେ ଆଡ୍‌ଭୋକେଟ୍ କାର୍ଯ୍ୟରୁ ଅବସର ନେଇ ଘରେ ରହୁଥିଲେ ଓ ମୃତ୍ୟୁ ପୂର୍ବରୁ ରୋଗାକ୍ରାନ୍ତ ହୋଇ ଯାଇଥିଲେ । ସ୍ୱାମୀଜୀ ଯୌବନ ସମୟରୁ ତାଙ୍କ ସ୍ତ୍ରୀଙ୍କୁ ହରାଇ ଆଉ ବିବାହ କରି ନଥିଲେ ।

ସ୍ୱାମୀଜୀ ତାହାଙ୍କ ପତ୍ନୀଙ୍କୁ ଅତି ସୁଖ ପାଉଥିଲେ ଏବଂ ନିର୍ଦ୍ଦେଶ ଦେଇଥିଲେ ଯେ ତାଙ୍କ ସ୍ମୃତି ଫଳକ ସ୍ୱତନ୍ତ୍ର ଭାବରେ ନରହି ତାଙ୍କ ସ୍ତ୍ରୀଙ୍କ ସମାଧିରେ ରହିବ, ତାହାହିଁ ହୋଇଅଛି । ସେ ମଧ୍ୟ କହି ଯାଇଥିଲେ ଯେ ମଲାପରେ ତାଙ୍କ ଦୁଇ ହାତ ପଦାକୁ ଦେଖାଇ ଶବ ନେବ । କାରଣ ସେ ସଂସାରରୁ କିଛି ନେଇ ଯାଉନାହାନ୍ତି । ସେ ଜଣେ ଖାଣ୍ଟି ଓମୁଠା ଏବଂ ଭାରତୀୟ ଜାତୀୟତାରେ ଦୃଢ଼ ବିଶ୍ୱାସୀ ଥିଲେ । ସମସ୍ତ ଜନହିତକର ପ୍ରଚେଷ୍ଟାରେ ସେ ଯୁଗରେ ସ୍ୱାମୀଜୀଙ୍କର ସହଯୋଗ ଓ ସାହାଯ୍ୟ ଥିଲା ।

ମୃତ୍ୟୁ ନୁହେଁ ମଣିଷର<br>
ଶେଷ ପରିଣତି,<br>
ସ୍ୱାମୀଜୀଙ୍କ ପଦପ୍ରାନ୍ତେ<br>
ଜଣାଏ ପ୍ରଣତି ।



ପରିବାର ବର୍ଗଙ୍କ ସହ ସ୍ୱାମୀ ବିଚିତ୍ରାନନ୍ଦ ଦାସ

# ପ୍ରଗତି କାହାଣୀ

## ଆଶାର ନାମ ଇନ୍ଦ୍ରଧନୁ

ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ ଜିଲ୍ଲା କଣ୍ଡାମାଳ ବ୍ଲକ୍‌ର ସନ୍ଧ୍ୟାପଲ୍ଲୀ ଗାଁ । ନାଆଁଟି ତା'ର ଲକ୍ଷ୍ମଣ ଭୋଇ । ନିତିଦିନିଆ ସୂର୍ଯ୍ୟକୁ ସେ ଆକାଶରେ ଦେଖେ । ଇଏ ସତ । ହେଲେ ତା'ର ଦାରିଦ୍ର୍ୟ ? ଇଏ କ'ଣ ସୂର୍ଯ୍ୟ ଆଲୁଅରେ ଜଳି ପୋଡ଼ି ଭସ୍ମୀଭୂତ ହେବକି ? ଏଇ ଆଲୁଅରେ ପୁଣି ସବୁ ଜିନିଷ ଦିଶୁଛି, ତେବେ ତା' ଜୀବନରୁ କ'ଣ ହା ହୁତାଶ ଲିଭିବନି ? ସୁଖର ଦିନ ତା' ଜୀବନରେ ଆସିବନି ? ଲକ୍ଷ୍ମଣ ମନରେ ଏମିତି ଅନେକ ଭାବନା । ବଞ୍ଚିବା ପାଇଁ ଅନେକ ଅନୁଚିନ୍ତା ।

ଆଖି ସାମ୍ନାରେ ଦେଖୁଛି ମଣିଷ ଗୁଡ଼ାକ ଏତେ ଚଞ୍ଚଳ ବଦଳି ଗଲେଣି । ହୃଦୟରେ ତା' ପାଇଁ କାହାର ଦରଦ ନାହିଁ । ଗରିବ ଗୁରୁବା ପୁଣି ବଞ୍ଚିବେ କିମିତି ? ନିଜ ଉପରେ ପୂର୍ଣ୍ଣ ଭରସା ରଖି ଆଗେଇବାକୁ ଚେଷ୍ଟା କଲା ଲକ୍ଷ୍ମଣ ଭୋଇ । ସବୁ ଯୋଜନାର ମୂଳ କେନ୍ଦ୍ର ହେଲା ବ୍ଲକ୍ ଅଫିସ୍ । କାହାଠୁ କ'ଣ ଶୁଣି ସିଧାସଳଖ ଧାଇଁଲା ବ୍ଲକ୍ ଆଡ଼େ । ସେ ଠିକ୍ କଲା ଗୋଟିଏ ପୋଖରୀ ପଟ୍ଟା ଆଣି ମାଛ ଚାଷ କରିବ । ଗ୍ରାମପଞ୍ଚାୟତ ପୋଖରୀତ ୧୦ ବର୍ଷିଆ ପଟ୍ଟାରେ ସରକାରଙ୍କ ତରଫରୁ ମିଳୁଛି । ପୁଣି ଦରିଦ୍ରତମ ଲୋକ ମାନଙ୍କର ଆର୍ଥିକ ଥଇଥାନ ପାଇଁ ସକଳ ସୁଯୋଗ ।

ଅଧ ଏକର ପୋଖରୀ ପଟ୍ଟା ମିଳିଲା । ୩-୯-୮୩ ମସିହାରେ ତହିଁରେ ଯାଆଁଳ ଛଡ଼ା ହେଲା ୧୦୦୦ । ପ୍ରଥମ ବର୍ଷ ସାର, ମାଛ ଖାଦ୍ୟ ଓ ସାମଗ୍ରୀ ବାବଦକୁ ତାକୁ ମିଳିଲା ୬୨୯.୩୭ ଟଙ୍କା । ମତ୍ସ୍ୟ ସଂପ୍ରସାରଣ ଅଧିକାରୀ ଓ ମତ୍ସ୍ୟ ବିଶେଷଜ୍ଞଙ୍କ ପରାମର୍ଶକ୍ରମେ ଆଧୁନିକ ମିଶ୍ରିତ ପ୍ରଣାଳୀରେ ମାଛ ଚାଷ । ମାତ୍ର କେଇମାସ ମେହେନତ୍ ଫଳରେ ମାଛ ଉତ୍ପାଦନ କରି ଲକ୍ଷ୍ମଣ ଭୋଇ ପାଇଲା ୧,୩୦୦ ଟଙ୍କା । ହୁଡ଼ା ପନିପରିବା ବିକ୍ରୀରୁ ମଧ୍ୟ ତାକୁ ମିଳିଲା ୧୭୬ ଟଙ୍କା । ସାମାନ୍ୟ ପରିଶ୍ରମରେ ହାତକୁ ଆସିଲା ଦେଢ଼ ହଜାର ଟଙ୍କା । ଗୋଟିଏ ଟଙ୍କା ପାଇଁ ଯିଏ ଦିନେ ଡହଳ ବିକଳ ହେଉଥିଲା, ସିଏ ଆଜି ନିଜର ମେହେନତ୍ ଫଳରେ ହାତରେ ପାଇଲା ଏତେ ଟଙ୍କା । ମାଛ ଚାଷ ତା' ମନରେ ବଞ୍ଚିବା ପାଇଁ ଆଶା ସଞ୍ଚାର କଲା । ଆଗକୁ ପାଦ ବଢ଼େଇବାର ଉପାୟ ବଢ଼େଇ ଦେଲା । ମନ ଆକାଶରେ ଖେଳିଗଲା ସାତରଙ୍ଗ ।

## ପାହାଚ ପରେ ପାହାଚ

ଗୋଟିଏ ପାହାଚ । ଆଉ ଗୋଟିଏ....ପୁଣି ଗୋଟିଏ । ଜୀବନର ଏଇ ଦାରିଦ୍ର୍ୟ ପାହାଚ ଏମିତି କେତୋଟି ? ବାଲେଶ୍ୱର ଜିଲ୍ଲାର ନୀଳଗିରି ବ୍ଲକ୍‌ର ବଂଶୀଧର ମହାଲିକ ଓ କୃପାସିନ୍ଧୁ ଖଣ୍ଡୋଇ ପାହାଚ ଗୁଡ଼ିକ କେବଳ ଗଣି ଚାଲୁଥିଲେ । ସୁଖ ଲୁଚିଥିଲା ଦୁଃଖର କଳାମେଘ ଆଢୁଆଳରେ । ଦୁଃଖ ଏବଂ ଦୁଃଖ । ସାରା ଦିନର ଖଟଣି ବେଳର ଆୟ ମାତ୍ର ଛଅରୁ ଆଠ ଟଙ୍କା । ବାସ୍......

ସୁଯୋଗ ଆସିଲା । ସମୟ ସୁଯୋଗକୁ ବାଟ କଢେଇ ଆଣିଲା । ଦାରିଦ୍ର୍ୟ ବିରୁଦ୍ଧରେ ଅଭିଯାନ ପାଇଁ ନୂଆ କାର୍ଯ୍ୟକ୍ରମ ଦରିଦ୍ରତମ ବ୍ୟକ୍ତି ମାନଙ୍କର ଆର୍ଥିକ ଥଇଥାନ । ବାଡ଼ି-ଗୁଡ଼ରେ ଗୁଣ୍ଠେ ଜମି ଏମାନଙ୍କର ନାହିଁ । ତେଣୁ, ବଛା ବଛି ଭିତରେ ଏଇ ଦୁଇଜଣଯାକ ରହିଗଲେ । ଜଣପିଛା ଅଧ ଏକର ପୋଖରୀ ହିସାବରେ ଉଭୟ ଏକରେ ପୋଖରୀ ପାଇଲେ । ପୋଖରୀ ପୁନରୁଦ୍ଧାର ବାବଦକୁ ବ୍ୟୟ କରାଗଲା ୮,୦୦୦ ଟଙ୍କା । ବଂଶୀଧର, କୃପାସିନ୍ଧୁ ଉଭୟ କାର୍ଯ୍ୟକ୍ରମରେ ଭାଗି ନେଲେ । ଦେଶର ଦାରିଦ୍ର୍ୟ ଭିତରେ ଘୁଣ ଖାଉଥିଲା ଦୁଇଟି ଅମୂଲ୍ୟ ଜୀବନ । କିଏ ବା କିଆଁ ତା'ର ହିସାବ ରଖିବ ?

ପୋଖରୀ ପତିତ ଅବସ୍ଥାରେ ପଡ଼ିଥିଲା । ପୋଖରୀ ଆଗେଇ ଆସିଲା ତା'ର ଜଳ ସଂପଦ ନେଇ ଦାରିଦ୍ର୍ୟ ବିରୁଦ୍ଧରେ ଅଭିଯାନ କରିବାକୁ । ବଂଶୀଧର, କୃପାସିନ୍ଧୁ ଉଭୟଙ୍କ ହାତର କରଣୀରେ ସେଇ ପୋଖରୀ ନେଲା ନୂଆ ରୂପ । ମାଛ ଆଦାୟ ଆରମ୍ଭ ହେଲା ୧୯୮୧-୮୨ ଆର୍ଥିକ ବର୍ଷରୁ । ୧୯୮୧-୮୨ରେ ମାଛ ମିଳିଲା ୬୩୭ କିଲୋଗ୍ରାମ୍. ୧୯୮୨-୮୩ରେ ୫୪୮ କିଲୋଗ୍ରାମ୍ ଏବଂ ୧୯୮୩-୮୪ରେ ୪୫୬ କିଲୋଗ୍ରାମ୍ । ପୋଖରୀ ହୁଡ଼ାରେ ଫଳିଲା ନାନା ପ୍ରକାର ପନିପରିବା । ସମୁଦାୟ ଆୟକୁ ମିଶାଇ ଯଥାକ୍ରମେ ଆୟ ହେଲା ୬,୫୭୨ ଟଙ୍କା, ୫,୭୧୬ ଟଙ୍କା ଓ ୪,୮୫୪ ଟଙ୍କା ।

ହାତରେ ଧନ ଆସିବାରୁ ପୋଖରୀ ସଜ କରିବାଠୁଁ ଆରମ୍ଭ କରି ଅନ୍ୟାନ୍ୟ କାମ ଏବଂ ବ୍ୟାଙ୍କ ଋଣ କିସ୍ତି, ପଟ୍ଟା ଟଙ୍କା ପଇଠ କରି ସେମାନେ ଖୁବ୍ ଭଲରେ ଅଛନ୍ତି । ଖାଲି ସେତିକି ନୁହେଁ, ବଳକା ଟଙ୍କା ମଧ୍ୟ ଡାକଘର ସଞ୍ଚୟ ଜମାରେ ଗଚ୍ଛିତ ଅଛି । ସମୃଦ୍ଧିର ପାହାଚରେ ସେମାନେ ପହଞ୍ଚି ପାରିଛନ୍ତି ଏଇ ମାଛ ପୋଖରୀ ସକାଶେ ।

# ପ୍ରଭାତବାବୁଙ୍କ ମାଛ ପୋଖରୀ

ପାଠପଢାର ପରବର୍ତ୍ତି ଲକ୍ଷ ଯଦି ପ୍ରଶ୍ନ କରାଯାଏ, ତେବେ ସମସ୍ତେ କହିବେ ଚାକିରି । ଏହା ଅତି ସାଧାରଣ କଥା । ଚାକିରି ନ କରି ମଧ୍ୟ ଗୁହାରାଣ ମେଣ୍ଟାଇ ହେବ । ନିଜକୁ ପ୍ରତିଷ୍ଠିତ କରିହେବ । ଏହି ଚିନ୍ତା ଧାରାରେ ବଶବର୍ତ୍ତି ହୋଇ ଲକ୍ଷ ପଥରେ ଆଗେଇ ଚାଲିଲେ ପୁରୀ ଜିଲ୍ଲାର ଜଣେ ଶିକ୍ଷିତ କୃଷି ବିଜ୍ଞାନୀ ଶ୍ରୀ ପ୍ରଭାତ କୁମାର ମିଶ୍ର । କୃଷି ସହିତ ଆନୁଷଙ୍ଗିକ ଧନ୍ଦା ହିସାବରେ ସେ ମାଛ ଚାଷକୁ ଗ୍ରହଣ କଲେ ।

କୃଷି ବିଜ୍ଞାନୀ ପ୍ରଭାତ କୁମାରଙ୍କ ମନରେ ମତ୍ସ୍ୟ ଚାଷୀ ହେବାର ପ୍ରଗାଢ଼ ଆଗ୍ରହ ଭୁଙ୍କି ମାରିଲା । ଯାଆଁଳ ଉତ୍ପାଦନ ଠାରୁ ଆରମ୍ଭ କରି ମାଛ ଉତ୍ପାଦନ ପର୍ଯ୍ୟନ୍ତ ସବୁ ଧନ୍ଦା ଯେପରି ବୈଜ୍ଞାନିକ ଭିତ୍ତିରେ ହୋଇ ପାରିବ, ସେଥିପାଇଁ ତାଙ୍କର ବିଶେଷ ଆଗ୍ରହ ସୃଷ୍ଟି ହେଲା । ନିଜ ସ୍ୱପ୍ନର ଚରିତାର୍ଥ ପାଇଁ ସେ ପୁରୀସ୍ଥିତ ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥାର ସାହାଯ୍ୟ ଲୋଡ଼ିଲେ । କୃତିମ ପ୍ରଜନନ ପ୍ରଣାଳୀ ମାଧ୍ୟମରେ ଯାଆଁଳ ଉତ୍ପାଦନ ପାଇଁ ୧୯୮୨-୮୩ ମସିହାରେ ସେ ତାଲିମ ଗ୍ରହଣ କଲେ । ପ୍ରଭାତ କୁମାରଙ୍କୁ ସଂସ୍ଥା ତରଫରୁ କୃତିମ ଯାଆଁଳ ପ୍ରଜନନ ମିନିକିଟ୍ ଯୋଗାଇ ଦିଆଗଲା । ଉକ୍ତ ସଂସ୍ଥାର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଅଧିକାରୀ ଓ ପୁରୀ ଜିଲ୍ଲା ମତ୍ସ୍ୟ ବିଭାଗର ଡେପୁଟି ସୁପରିନଟେଣ୍ଡେଣ୍ଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱା-ବଧାନରେ ପ୍ରଭାତ କୁମାର ନିଜ ପୋଖରୀରେ କୃତ୍ରିମ ପ୍ରଭାବିତ ପ୍ରଜନନ କାର୍ଯ୍ୟକ୍ରମରେ କୃତିତ୍ୱ ହାସଲ କଲେ । ଉତ୍ପାଦିତ ୫ ଲକ୍ଷ ଯାଆଁଳ ବିକ୍ରି ବାବଦକୁ ସେ ୧୪ ହଜାର ଟଙ୍କା ପାଇଲେ । ଏହାଛଡ଼ା ୩ ଏକର ପୋଖରୀରେ ମିଶ୍ରିତ ମାଛଚାଷ କରି ସେ ବାବଦକୁ ବର୍ଷକୁ ୩୬ ହଜାର ଟଙ୍କା ପାଉଛନ୍ତି । ତାଙ୍କର ଏହି ବଳୁଭାନନ୍ଦ ମାଛ ଫାର୍ମରେ ସେ ୪ ଜଣ ଶ୍ରମିକଙ୍କୁ ଆଂଶିକ ଭାବେ ଓ ୬ ଜଣ ଶ୍ରମିକଙ୍କୁ ସଂପୂର୍ଣ୍ଣ ଭାବେ ନିଯୁକ୍ତି ଦେଇଛନ୍ତି । ଏ ବର୍ଷ କୃତ୍ରିମ ପ୍ରଭାବିତ ପ୍ରଜନନ ପ୍ରଣାଳୀରେ ଯାଆଁଳ ଉତ୍ପାଦନ କରି ବ୍ରହ୍ମଗିରି, ପୁରୀ ସଦର ଓ ସତ୍ୟବାଦୀ ବ୍ଲକ୍‌ର ମତ୍ସ୍ୟଚାଷୀମାନଙ୍କୁ ସୁଲଭ ମୂଲ୍ୟରେ ଯାଆଁଳ ଯୋଗାଇ ଦେବାର ବ୍ୟବସ୍ଥା କରୁଛନ୍ତି ।

---

# ଗ୍ରାମ୍ୟ ଜୀବି ଉନ୍ନୟନ

କଟକ ଜିଲ୍ଲା ସଦର ସବ୍‌ଡିଭିଜନର ନିଆଳି ବ୍ଲକ୍ ଅନ୍ତର୍ଗତ ହାଟସାହି ଗ୍ରାମର ଶ୍ରୀ ଚକ୍ରଧର ସାହୁ ଜଣେ ନାମ-ମାତ୍ର ଚାଷୀ । ତାଙ୍କର ଚାଷ ଜମି ବୋଲି ମାତ୍ର ୫୦ ଡେସିମିଲ ଓ ଘରଡିହ ୮ ଡେସିମିଲ । ଖାଇବାକୁ ଘରେ ୫ ପ୍ରାଣୀ କୁଟୁମ୍ବ । ଜମିରୁ ମିଳୁଥିବା ଧାନରେ ମାସେ ମଧ୍ୟ ଚଳିବା କଷ୍ଟସାଧ୍ୟ । ପାନ ବରଜରେ ହାଡ଼ଭଙ୍ଗା ପରିଶ୍ରମ କରି ଶ୍ରୀ ସାହୁ ନିଜ ପରିବାରର ବାକୀ ୧୧ ମାସ ଭରଣ ପୋଷଣ କରନ୍ତି ।

ଗ୍ରାମ୍ୟ ଦରିଦ୍ର ଲୋକଙ୍କ ଅର୍ଥନୈତିକ ପୁନର୍ବସତି ଯୋଜନାରେ ମନୋନୀତ ହୋଇ ଶ୍ରୀ ସାହୁ ୨୭-୩-୧୯୮୧ ତାରିଖରେ ଇଣ୍ଡି-ଆନ୍ ବ୍ୟାଙ୍କରୁ ଋଣ ନେଇ ମାଈ ବାଛୁରୀ ସହ ପ୍ରଥମ ଗାଈଟିଏ ନିଆଳିରୁ କିଣିଲେ । କିଣିଲାବେଳେ ଗାଈଟି ୫ ଲିଟର କ୍ଷୀର ଦେଉଥିଲା । ତାଙ୍କର ସେବା ଯତ୍ନରେ ତାହା ୭ ଲିଟରକୁ ବଢ଼ିଲା । ପ୍ରତି ଥର ୩-୪ ମାସ ପଡ଼ିଆ ରହି ତାଙ୍କ ଘରେ ୨ଟି ଅଣ୍ଡିରା ବାଛୁରୀ ଜନ୍ମକରି ପୁଣି ୭ ଲିଟର କ୍ଷୀର ଦେଲା । ପ୍ରଥମ ଗାଈଟିକୁ ୨,୫୦୦ ଟଙ୍କାରେ ଶ୍ରୀ ସାହୁ ବିକ୍ରୀ କରି ଏହି ଟଙ୍କାରୁ ୧ ହଜାର ଟଙ୍କା ମୂଳଋଣ ବାବଦ ଶୁଝି ଦେଇଛନ୍ତି । କେବଳ ମାତ୍ର ୩୫୦ ଟଙ୍କା ସୁଧ ବାକୀ ଅଛି । ଏହି ଗାଈର ପ୍ରଥମ ମାଈ ବାଛୁରୀଟି ଗାଈ ପଣିଆ କରି ଅଣ୍ଡିରା ବାଛୁରୀଟିଏ ଜନ୍ମକରି ଦୈନିକ ୭ ଲିଟର କ୍ଷୀର ଦେଲା । ଏବେ ପୁଣି ଗର୍ଭ ଅଛି ।

ଶ୍ରୀ ସାହୁ ଗୋତିପ୍ରଥା ଉଚ୍ଛେଦ ଯୋଜନାରେ ୨ୟ ଗାଈଟି ୨୩-୨-୧୯୮୨ ତାରିଖରେ ପାଇଲେ । ଏ ଗାଈଟି କିଣିଲାବେଳେ ମାଈ ବାଛୁରୀଟିଏ ଲାଗିଥିଲା ଓ ସାଢ଼େ ୮ ଲିଟର କ୍ଷୀର ମିଳୁଥିଲା । ଏ ଗାଈଟି ମଧ୍ୟ ପ୍ରାୟ ୪ ମାସ ଲେଖା ପଡ଼ିଆ ରହି ପୁଣି ୨ଟି ଅଣ୍ଡିରା ବାଛୁରୀ ଜନ୍ମ କରିଛି ଓ ସେଇ ସାଢ଼େ ୮ ଲିଟର କ୍ଷୀର ଦେଉଛି । ୨ୟ ଗାଈର ପ୍ରଥମ ମାଈ ବାଛୁରୀଟି ୨ଟି ମାଈ ବାଛୁରୀ ଜନ୍ମ କରିଛି ଓ ବର୍ତ୍ତମାନ ଦିନକୁ ୮ ଲିଟର କ୍ଷୀର ଦେଉଛି । କ୍ଷୀର ଲିଟରକୁ ଟ୨.୨୦ ପଇସାରୁ ଟ୨.୪୦ ପଇସା ଦରରେ ବିକ୍ରୀ ହେଉଛି । ଏହି ରୋଜଗାରରେ ବଡ଼ ପୁଅଟି ବି. ଏ. ଯାଏ ପଢ଼ି ପରୀକ୍ଷା ଦେଇଛି ଓ ଶ୍ରୀ ସାହୁ ୨ ବଖରା ପକ୍କା ଘର ତୋଳିବାକୁ ସମର୍ଥ ହୋଇଛନ୍ତି । ସାନ ପୁଅଟି କ୍ଷୀର ବିକ୍ରୀ ଧନରେ ନିଆଳି ବଜାର ଉପରେ ଖଣ୍ଡିଏ ଛୋଟ ଖିଲିପାନ ଦୋକାନ କରିଛନ୍ତି । ଏବେ ଶ୍ରୀ ସାହୁ ଆଉ ପାନ ବରଜରେ ଗୋତି ଖଟୁ ନାହାନ୍ତି କି ମଜୁରୀ ଅଭାବରେ ତାଙ୍କୁ ଦୁଃଖରେ ଦିନ କାଟିବାକୁ ପଡୁନାହିଁ । ତାଙ୍କ ପରିବାର ସୁଖରେ ଚଳୁଛନ୍ତି । ତାଙ୍କ ଦେଖାଦେଖି ପାଖ ପଡ଼ିଶାର ଅନ୍ୟାନ୍ୟ ଦରିଦ୍ର ଲୋକମାନେ ମଧ୍ୟ ଉତ୍ସାହିତ ହୋଇ ଏହି ବ୍ୟବସାୟ ପ୍ରତି ଆକୃଷ୍ଟ ହୋଇଛନ୍ତି ।

---

ଆମ ସମସ୍ତଙ୍କ ଚେଷ୍ଟାରେ ଓଡ଼ିଶାର ଭବିତବ୍ୟ ଅଧିକ ଉଜ୍ଜ୍ୱଳ ହେବ ଏବଂ ଓଡ଼ିଶା ଭାରତରେ ଏକ ଗୌରବମୟ ସ୍ଥାନ ଅଧିକାର କରିବ ।



# ପ୍ରଗତି ପ୍ରସଙ୍ଗ

## ସମୁଦ୍ର ମାଛଧରାଳିଙ୍କ ପାଇଁ

ସମୁଦ୍ର ଉପକୂଳ ଅଂଚଳରେ ବସବାସ କରୁଥିବା ମତ୍ସ୍ୟଜୀବୀମାନଂକୁ ମାଛଧରା ମାଂଦା ସମୟରେ ଆର୍ଥିକ ସାହାଯ୍ୟ କରିଥାରେ ସେମାନଂକ ଆର୍ଥିକ ଉନ୍ନତି ଉଦ୍ଦେଶ୍ୟରେ ଏକ ନୂଆ କାର୍ଯ୍ୟକ୍ରମ ମତ୍ସ୍ୟ ବିଭାଗ ତରଫରୁ ପ୍ରବର୍ତ୍ତନ କରାଯାଇଛି । ଓଡ଼ିଶାରେ ସମୁଦ୍ର ମାଛଧରାକୁ ଜୀବିକା କରି ବଂଚୁଥିବା ମତ୍ସ୍ୟଜୀବୀମାନଙ୍କ ସଂଖ୍ୟା ଯାହା ଦୈନଂଦିନ ଜୀବିକାର ଆଂଶିକ ସମୟ ନିୟୋଜିତ କରୁଥିବା ମତ୍ସ୍ୟଜୀବୀ ଯଥେଷ୍ଟ କମ୍ ବର୍ଷସାରା ପାଣିପାଗର ତାରତମ୍ୟ ଯୋଗୁଁ ମାଛ ଧରିବା ସେମାନଂକ ପକ୍ଷେ ସମ୍ଭବପର ନୁହେଁ । ଏହି ବେ-ରୋଜଗାର ସମୟ ସାଧାରଣତଃ ଅପ୍ରେଲଠାରୁ ଜୁନ୍ ମାସ ପର୍ଯ୍ୟନ୍ତ ହୋଇଥାଏ ଏତିକିବେଳେ ସେମାନଂକର ଅର୍ଥାଭାବ ଏବଂ ଠିକ ଏହି ସମୟରେ ସେମାନଂକୁ ଆର୍ଥିକ ସାହାଯ୍ୟ ଦେବା କଥା ।

ଉକ୍ତ କାର୍ଯ୍ୟକ୍ରମ ଅନୁସାରେ ସଂପୃକ୍ତ ମତ୍ସ୍ୟଜୀବୀମାନେ ଜୁଲାଇଠାରୁ ମାର୍ଚ୍ଚ, ଏଇ ନଅମାସ ପର୍ଯ୍ୟନ୍ତ ମାସିକ ୧୦ଟଙ୍କା ଲେଖାଏଁ ପାଶ୍‌ବୁକ୍‌ରେ ଜମା ରଖି ନିକଟସ୍ଥ ସହକାରୀ ମତ୍ସ୍ୟ ନିର୍ଦ୍ଦେଶକ (ସାମୁଦ୍ରିକ)ଙ୍କ ନିକଟରେ ଦାଖଲ କରିବେ । ମତ୍ସ୍ୟଜୀବୀଙ୍କ ୯୦ ଟଙ୍କା ସହିତ ସରକାର ଆହୁରି ୯୦ଟଙ୍କା ସଂପୃକ୍ତ ମତ୍ସ୍ୟଜୀବୀଙ୍କ ପାଶବୁକରେ ଜମା ରଖିବେ । ଏଇ ଅର୍ଥରୁ ବେ-ରୋଜଗାରୀ ଉପରୋକ୍ତ ୩ ମାସରେ ମାସିକ ୬୦ ଟଙ୍କା ଲେଖାଏଁ ପ୍ରତି ମତ୍ସ୍ୟଜୀବୀଂକୁ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯିବ ।

ଗତ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମରେ ୪୫ ହଜାର ଟଂକା ବ୍ୟୟ କରାଯାଇଛି । ଏହାଦ୍ୱାରା ୫୦୦ ମତ୍ସ୍ୟଜୀବୀ ଉପକୃତ ହୋଇଛନ୍ତି । ଚଳିତ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମ ପାଇଁ ଆହୁରି ୪୫ ହଜାର ଟଙ୍କା ବ୍ୟୟ ବରାଦ୍ ଅଛି । ଏହାଦ୍ୱାରା ପୂର୍ବବର୍ଷ ଭଳି ଆହୁରି ୫୦୦ ଜଣ ମତ୍ସ୍ୟଜୀବୀ ଉପକୃତ ହେବେ ।

## ନୂଆପଡ଼ାରେ ନୂଆ କାମ

କଳାହାଣ୍ଡି ଜିଲା ନୂଆପଡ଼ା ବ୍ଲକ୍‌ର ମୋଟ୍ ୧୬୭ଟି ଗ୍ରାମ ମଧ୍ୟରୁ ୭୬ଟି ଗ୍ରାମରେ ଶତକଡ଼ା ୫୦ରୁ ୭୫ଭାଗ ଓ ତଦୂର୍ଦ୍ଧ୍ୱ ଫସଲହାନୀ ହୋଇଛି । ବ୍ଲକ୍‌ର ୬ଟି ଗ୍ରାମରେ ୫୦୦ଜଣ ଲୋକଂକୁ ଜରୁରୀ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ଖାଦ୍ୟ ଯୋଗାଇ ଦିଆଯାଉଛି ଏବଂ ୮୩ଟି ଗ୍ରାମରେ ମହିଳା ସମିତି ସହାୟତାରେ ୭ ହଜାର ଲୋକଂକୁ ଖାଦ୍ୟ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ୬୮ଟି ସ୍କୁଲର ୩ ହଜାର ଛାତ୍ରଛାତ୍ରୀଂକୁ ମଧ୍ୟ ଖାଦ୍ୟ ବିତରଣ କରାଯାଉଛି । ସେହିପରି ରେଡ଼କ୍ରସ୍ ସଂସ୍ଥା ଜରିଆରେ ୨୫୦ ଜଣଙ୍କୁ ବଲ୍‌ଗାର ଗହମ ଇତ୍ୟାଦି ଆକାରରେ ଖାଦ୍ୟଦ୍ରବ୍ୟ ଯୋଗାଇ ଦିଆଯାଉଛି ।

ଜରୁରୀ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ଉପକୃତ ହେଉଥିବା ଲୋକଂକ ସଂଖ୍ୟା ୫୦୦ରୁ ୨,୫୦୦କୁ ବୃଦ୍ଧି କରିବାପାଇଁ ଜିଲାପାଳ ସତନ୍ତ୍ର ରିଲିଫ୍ କମିଶନରଂକୁ ଯେଉଁ ପ୍ରସ୍ତାବ ଦେଇଥିଲେ, ତାହା ଗୃହୀତ ହୋଇଯାଇଛି ।

ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ସହିତ ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯାଇଛି । ନୂଆପଡ଼ାର ସହକାରୀ ମୃତ୍ତିକା ସଂରକ୍ଷଣ ଅଫିସର ୩୦ଟି ଗ୍ରାମରେ 'ଟ୍ରେଂଚ ଫେନ୍‌ସିଂ' କାର୍ଯ୍ୟ ହାତକୁ ନେଇଛନ୍ତି । ଏଥିରେ ନିଯୁକ୍ତ ଶ୍ରମିକମାନଙ୍କୁ ୩୭,୦୫୪ ଟଙ୍କା ମଜୁରି ଆକାରରେ ଦିଆଯାଇଛି । ଏହାବ୍ୟତୀତ ନୂଆପଡ଼ା ଓ କୋମନା ବ୍ଲକ୍‌ରେ ମୃତ୍ତିକା ସଂରକ୍ଷଣ କାର୍ଯ୍ୟ ପାଇଁ ପ୍ରାଥମିକ ବ୍ୟବସ୍ଥା ସ୍ୱରୂପ ୧ ଲକ୍ଷ ଟଙ୍କା ମିଳିଛି । ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ବାହାରେ ରହିଯାଇଥିବା ଅନ୍ୟ ୪୬ ଟି କ୍ଷତିଗ୍ରସ୍ତ ଗ୍ରାମରେ ବି. ଡ଼ି. ଓ. ବିଭିନ୍ନ ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ଏବଂ ବର୍ତ୍ତମାନ ସୁଦ୍ଧା ୩୦ ଟି ଗ୍ରାମରେ କାର୍ଯ୍ୟ ଆରମ୍ଭ ହୋଇସାରିଲାଣି ।

ଗତ ଜୁଲାଇ ମାସରେ ସାଧାରଣ ବଣ୍ଟନ ବ୍ୟବସ୍ଥା ଅନୁଯାୟୀ ୧୨୯ କ୍ୱିଣ୍ଟାଲ ଏବଂ ଚଳିତ ମାସ ପ୍ରଥମ ସପ୍ତାହରେ ୧୩୩ କ୍ୱିଣ୍ଟାଲ ଚାଉଳ ବିକ୍ରୀ ପାଇଁ ଯୋଗାଇ ଦିଆଯାଇଛି । ସେଠାରେ କଣ୍ଟ୍ରୋଲ୍ ଚାଉଳ ଏବଂ ସାଧାରଣ ବଜାର ଚାଉଳ ଦର ମଧ୍ୟରେ ମାତ୍ର ୫୦ ପଇସା ଫରକ ଅଛି । ଚାଉଳ ଦର ସ୍ଥିର ରଖିବା ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଛି ଏବଂ ସ୍ଥାନୀୟ ବି. ଡ଼ି. ଓ. ହାଟମାନଙ୍କରେ କଣ୍ଟ୍ରୋଲ୍ ଚାଉଳ ବିକ୍ରୟ କରିବାକୁ ପଦକ୍ଷେପ ନେଇଛନ୍ତି ! ସଂପ୍ରତି ବର୍ଷା ହେବା ଫଳରେ ଫସଲ ପରିସ୍ଥିତିରେ ଉନ୍ନତି ଦେଖାଦେଇଛି ।

## ରନ୍ଧା ଖାଦ୍ୟ ଯୋଗାଣ

କଳାହାଣ୍ଡି ଜିଲା ବୋଦେନ୍ ବ୍ଲକ୍‌ର ମରୁଡ଼ିଗ୍ରସ୍ତ ଗ୍ରାମଗୁଡ଼ିକରେ ବ୍ୟାପକ ଶ୍ରମଭିତ୍ତିକ ଓ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା, ସାଧାରଣ ବଣ୍ଟନ ବ୍ୟବସ୍ଥା ଅନୁଯାୟୀ ଯଥେଷ୍ଟ ଖାଦ୍ୟଶସ୍ୟ ଯୋଗାଇଦେବା ଏବଂ ମୃତ୍ତିକା ସଂରକ୍ଷଣ ପାଇଁ ପଦକ୍ଷେପ ନେବା ଫଳରେ ବର୍ତ୍ତମାନ ସେଠାରେ ମରୁଡ଼ି ପରିସ୍ଥିତି ସୁଧୁରି ଯାଉଛି ।

ପୂର୍ବରୁ ଚାଲୁଥିବା ଜରୁରୀ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ୫୦ଟି ଭୋଜନ କେନ୍ଦ୍ର ଖୋଲିଯାଇ ସମୁଦାୟ ୩,୬୦୦ ଜଣଂକୁ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଉଛି । ସେମାନଂଙ୍କ ମଧ୍ୟରେ ୧,୮୦୦ ଜଣ ବୟସ୍କ ବ୍ୟକ୍ତି ଏବଂ

୧,୮୦୦ ଜଣ ଶିଶୁ ଅନ୍ତର୍ଭୁକ୍ତ । ପୂର୍ବରୁ ପ୍ରତ୍ୟେକ ବୟସଙ୍କ ପାଇଁ ଦିଆଯାଉଥିବା ୮୦ ଗ୍ରାମ ଗହମ ଓ ୨୦ ଗ୍ରାମ ଡାଲିର ପରିମାଣକୁ ଇତି ମଧ୍ୟରେ ଦ୍ୱିଗୁଣିତ କରାଯାଇଛି । ସେହିପରି ୭୩ଟି ଗ୍ରାମରେ ଥିବା ୭୪ଟି ଅଂଗନୱାଡ଼ି କେନ୍ଦ୍ରର ସହାୟତାରେ ୫ ହଜାର ଜଣ ବ୍ୟକ୍ତିଂକୁ ଏବଂ ୮୯ଟି ପ୍ରାଥମିକ ବିଦ୍ୟାଳୟର ୩ ହଜାର ଛାତ୍ର-ଛାତ୍ରୀଂକୁ ମଧ୍ୟ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଉଛି । ଏହାବ୍ୟତୀତ ଏହି ବ୍ଲକ୍‌ରେ ରେଡ଼କ୍ରସ ସୋସାଇଟିର ଉଦ୍ୟମରେ ୫୦୦ ଜଣ ବୃଦ୍ଧ ଓ ଦରିଦ୍ର ବ୍ୟକ୍ତିଂକୁ ଚିହ୍ନଟ କରାଯାଇ ସେମାନଙ୍କୁ ଚଳୁଗାର ଗହମ ଓ ବଟର ଅଏଲ ଯୋଗାଇ ଦିଆଯାଉଛି ।

ଏହି ବ୍ଲକ୍‌ରେ ଶ୍ରମଭିତ୍ତିକ କାର୍ଯ୍ୟର ସାଫଲ୍ୟ ମଧ୍ୟ ଉଲ୍ଲେଖନୀୟ ଏବଂ ଏ ବାବଦରେ ୮ ଲକ୍ଷ ୪୬ ହଜାର ୮୭୭ ଟଂକା ମଞ୍ଜୁର କରାଯାଇଛି । ଗତ ଜାନୁୟାରୀ ଓ ଫେବୃୟାରୀ ମାସରେ ସ୍ଥାନୀୟ ବ. ଡ଼ି. ଓ. ଙ୍କୁ ଏହି କାର୍ଯ୍ୟକ୍ରମ ଅନୁଯାୟୀ ୨ ଲକ୍ଷ ୫୦ ହଜାର ୯ ଶହ ଟଂକା ଦିଆଯାଇଥିଲା । ତନ୍ମଧ୍ୟରୁ ୨ ଲକ୍ଷ ୧୬ ହଜାର ୧୧୦ ଟଂକା ବ୍ୟୟ କରାଯାଇ ସମୁଦାୟ ୪୦ଟି ରାସ୍ତାର ଉନ୍ନୟନ ଏବଂ ୨୪ଟି ପୁଷ୍କରିଣୀ ଖନନ କରାଯାଇଛି । ଏହା ଫଳରେ ସ୍ଥାନୀୟ ଅଂଚଳର ବହୁ ଶ୍ରମଜୀବୀ କର୍ମ ନିଯୁକ୍ତି ପାଉଛନ୍ତି । ଏହା ବ୍ୟତୀତ ସେହି ବ୍ଲକ୍ ପାଇଁ ରାସ୍ତା ନର୍ମାଣ ଓ ଅନ୍ୟାନ୍ୟ ଶ୍ରମବହୁଳ କାର୍ଯ୍ୟ ବାବଦରେ ଅଧିକ ୧ ଲକ୍ଷ ୪୮ ହଜାର ୭୨୦ ଟଂକା ମଂଜୁର କରାଯାଇଥିଲା ଏବଂ ସେହି ଅର୍ଥ ବିନିଯୋଗରେ ବିଭିନ୍ନ କାର୍ଯ୍ୟ ତ୍ୱରାନ୍ୱିତ ହେଉଛି । ସେହିପରି ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ୧୭ଟି ଗ୍ରାମରେ 'ଟ୍ରେଂଚ୍ ଫେନ୍‌ସିଂ' କାର୍ଯ୍ୟ ତୁରନ୍ତ କାର୍ଯ୍ୟକାରୀ କରିବା ବାବଦରେ ୪ ଲକ୍ଷ ୪୭ ହଜାର ୨୫୭ ଟଂକା ବ୍ୟୟ ବରାଦ କରାଯାଇଛି । ଏଠାରେ ଉଲ୍ଲେଖ କରାଯାଇ-ପାରେ ଯେ, ବୋଡେନ୍ ବ୍ଲକ୍ ଅନ୍ତର୍ଗତ ସମୁଦାୟ ୮୮ଟି ମରୁଡ଼ି-ଗ୍ରସ୍ତ ଗ୍ରାମ ମଧ୍ୟରୁ ବି. ଡ଼ି. ଓ.ଙ୍କ ଉଦ୍ୟମରେ ୭୧ଟି ଗ୍ରାମରେ ଏବଂ ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ଅବଶିଷ୍ଟ ୧୭ଟି ଗ୍ରାମରେ ବିଭିନ୍ନ ଶ୍ରମବହୁଳ କାର୍ଯ୍ୟ ଶୁରୁ କରାଯାଇଛି ।

ଏହି ବ୍ଲକ୍‌ରେ ଖାଉଟିମାନଂକପାଇଁ ପର୍ଯ୍ୟାପ୍ତ ପରିମାଣର କଂଟ୍ରୋଲ ଗୁଉଳ ମହଜୁଦ୍ ରଖାଯାଇ ସ୍ଥାନୀୟ ହାଟରେ ବିକ୍ରୀ କରାଯାଉଛି । ଗତ ଦୁଇ ମାସରେ ଏହି ବ୍ଲକ୍ ପାଇଁ ସମୁଦାୟ ୧,୨୮୩ କ୍ୱିଣ୍ଟାଲ ଗୁଉଳ ଏବଂ ୮୫ କ୍ୱିଣ୍ଟାଲ ଗହମ ଯୋଗାଇ ଦିଆଯାଇଛି । ଇତିମଧ୍ୟରେ ସେଠାରେ ଭଲ ବର୍ଷା ହୋଇ-ଥିବାରୁ ଖରିଫ୍ ଫସଲ ପରିସ୍ଥିତି ସନ୍ତୋଷଜନକ ହେବବୋଲି ଆଶା କରାଯାଉଛି । ବ୍ଲକ୍‌ର କେତେକ ଅଂଚଳରେ ଗୁଲ୍ଟି ଜାତୀୟ ବିଭିନ୍ନ ଫସଲ ବର୍ତ୍ତମାନ ଅମଳ ହେଉଛି ।

—

## ବଉଳା କୁମ୍ଭୀର ପ୍ରଜନନ

ନିଃସଙ୍ଗ ଜୀବନଯାପନ କରୁଥିବା ନନ୍ଦନକାନନର ଗୋଟିଏ ମାଈ ବଉଳା କୁମ୍ଭୀର ପାଇଁ ଲକ୍ଷ୍ନୌର କୁକ୍‌ରାଇଲ ଚିଡ଼ିଆ-ଖାନାରୁ ଗୋଟିଏ ଅଣ୍ଡିରା ବଉଳା କୁମ୍ଭୀର ପ୍ରଜନନ ନିମନ୍ତେ ୧୯୮୩ ମସିହା ଅପ୍ରେଲ ମାସରେ ଅଣାଯାଇ ନବନିର୍ମିତ ଆବଦ୍ଧ ଜଳାଶୟରେ ଛଡ଼ାଯାଇଥିଲା । ଏହି କୁମ୍ଭୀର ଦମ୍ପତିଙ୍କର ପ୍ରଜନନ ପ୍ରକ୍ରିୟା ସଫଳତାର ସହିତ ହୋଇ ପ୍ରଥମଥର ପାଇଁ ନନ୍ଦନକାନନରେ ଚଳିତମାସ ୫ ତାରିଖରେ ୮ଟି ଛୁଆ ଜନ୍ମ ହୋଇଛନ୍ତି । ଏହା ବ୍ୟତୀତ କେବେ ଭିତରକନିକାର ଗୁପ୍ତବାଲିଠାରେ ବନ ବିଭାଗ ଦ୍ୱାରା ଅଣ୍ଡା ସଂଗ୍ରହ କରି ଛୁଆ ଫୁଟାଯାଏ ଓ ନଦୀରେ ଛଡ଼ାଯାଏ । ଏହାଦ୍ୱାରା ଲୁପ୍ତ ପ୍ରାୟ ବଉଳା କୁମ୍ଭୀରଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଛି ।

ନନ୍ଦନକାନନକୁ ଆସୁଥିବା ଦର୍ଶକମାନଙ୍କର ସଂଖ୍ୟା ଏ ବର୍ଷ ଜୁନ ମାସରେ ୧,୦୦,୪୬୧ରେ ପହଞ୍ଚି - ଜୁନ ମାସ ପାଇଁ ଅନ୍ୟ ଏକ ନୂତନ ରେକର୍ଡ ସୃଷ୍ଟି ହୋଇଛି । ଭୁବନେଶ୍ୱର ଓ କଟକ ସହିତ ବସ ଯୋଗାଯୋଗ ଉନ୍ନତି ହେଲେ , ଆହୁରି ଅନେକ ଯାତ୍ରୀ ନନ୍ଦନକାନନକୁ ଆସି ପାରିବେ ।

—

## ରମାଦେବୀଙ୍କ ନାମରେ ଜାହାଜ

ଜାତି ପ୍ରତି ସ୍ୱର୍ଗତା ରମାଦେବୀଙ୍କର ଉଲ୍ଲେଖନୀୟ ସେବା ଯୋଗୁ ତାଙ୍କର ସମ୍ମାନାର୍ଥେ ତଥା ସ୍ମୃତିରକ୍ଷା ପାଇଁ ଭାରତ ସରକାରଙ୍କ ଉପକୂଳ ସୁରକ୍ଷା ସଂସ୍ଥାର ଏକ ନୂଆ ଜାହାଜକୁ ତାଙ୍କ ନାମରେ ନାମିତ କରାଯିବ । ଏଥିପାଇଁ ସ୍ୱର୍ଗତା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସେହି ସଂସ୍ଥାର କଲିକତାଠାରେ ନିର୍ମାଣାଧୀନ ଥିବା ଏକ ଜାହାଜ ବାଛିଥିଲେ । ଆସନ୍ତା ଅଗଷ୍ଟମାସ ୩ ତାରିଖରେ କଲିକତାରେ କେନ୍ଦ୍ର ଅର୍ଥ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜନାର୍ଦ୍ଦନ ପୂଜାରୀ ଏହି ଜାହାଜକୁ ଆନୁଷ୍ଠାନିକ ଭାବେ ଭସାଣ କରିବେ । ଏହି ଭସାଣି ଉତ୍ସବରେ ସମ୍ମାନୀୟା ଅତିଥି ଭାବରେ ଯୋଗ ଦେବା ପାଇଁ ଶ୍ରୀ ପୂଜାରୀ ଶ୍ରୀମତୀ ରମାଦେବୀଙ୍କ ସହିତ ସାକ୍ଷାତ କରିବାର କାର୍ଯ୍ୟକ୍ରମ ଥିଲା ବୋଲି ସୁରକ୍ଷା ସଂସ୍ଥାର ମହାନିର୍ଦ୍ଦେଶକ ଭାଇସ ଆଡ଼ମିରାଲ ଆଇ. କେ,. ଏସ: ଖୁରାନା ଗତକାଲି ଏଠାରେ ପ୍ରକାଶ କରିଛନ୍ତି ।

ଗତକାଲି ଆଡ଼ମିରାଲ ଖୁରାନା ଓଡିଶା ଗସ୍ତରେ ଆସି ମୁଖ୍ୟ ଶାସନ ସଚିବ ଶ୍ରୀ ଜ୍ଞାନଚନ୍ଦ୍ରଙ୍କ ସହିତ ସାକ୍ଷାତ କରିଥିଲେ ଓ ପରେ କଟକ ଯାଇ ସ୍ୱର୍ଗୀୟା ରମାଦେବୀଙ୍କ ପୁତ୍ର ଶ୍ରୀ ମନମୋହନ ଚୌଧୁରୀଙ୍କ ସହିତ ସାକ୍ଷାତ କରି ତାଙ୍କର ମାତାଙ୍କ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରିଥିଲେ । ସେହି ଭସାଣି ଉତ୍ସବରେ ଯୋଗ ଦେବା ପାଇଁ ଶ୍ରୀ ଖୁରାନା ଶ୍ରୀ ଚୌଧୁରୀ ଓ ତାଙ୍କ ପରିବାରଙ୍କୁ ନିମନ୍ତ୍ରଣ କରିଛନ୍ତି ।

—

## ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ

ଷଷ୍ଠ ଯୋଜନା କାଳରେ ରାଜ୍ୟର ଗ୍ରାମାଞ୍ଚଳରେ ବିଭିନ୍ନ ରାସ୍ତା ଓ ସେତୁ ଇତ୍ୟାଦିର ନିର୍ମାଣ ଏବଂ ଉନ୍ନତି କରିବା

ବାବଦରେ ସମୁଦାୟ ୭୩ ଲକ୍ଷ ଟଙ୍କା ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ମିଳିଥିଲା । ତନ୍ମଧ୍ୟରେ ୧୯୮୨-୮୩ ଓ ୧୯୮୩-୮୪ ମସିହାରେ ମିଳିଥିବା ୨୦ ଲକ୍ଷ ଲେଖାଏଁ ଟଙ୍କା ଏବଂ ଗତ ଆର୍ଥିକ ବର୍ଷରେ ମିଳିଥିବା ୩୦ ଲକ୍ଷ ଟଙ୍କା ଅନ୍ତର୍ଭୁକ୍ତ । ୧୯୮୦-୮୧ ମସିହାରେ ମିଳିଥିବା ୩ ଲକ୍ଷ ଟଙ୍କାକୁ ଗୁଣୁପୁର-ଗଡ଼ପୁର ରାସ୍ତାରେ ସାନନଈ ଉପରେ ଏକ ସେତୁ ନିର୍ମାଣ ପାଇଁ ବିନିଯୋଗ କରାଯାଇଥିଲା । ସେହିପରି ଅବଶିଷ୍ଟ ୭୦ ଲକ୍ଷ ଟଙ୍କା ମଧ୍ୟରୁ ସାନନଈ ସେତୁକୁ ପୂର୍ଣ୍ଣାଙ୍ଗ କରିବା ବାବଦରେ ୯ ଲକ୍ଷ ଟଙ୍କା, ପାର୍ବତୀପୁର-ଲକ୍ଷ୍ମୀପୁର ରାସ୍ତାରେ ସ୍ରୋତବତୀ ନଦୀରେ ଏକ କଜ୍‌ୱେ ନିର୍ମାଣ ପାଇଁ ୧୦ ଲକ୍ଷ ଟଙ୍କା, ମୁକୁନ୍ଦପୁର-ରେଣାପଦର ରାସ୍ତା, ପୋଖରୀବନ୍ଧ-ମୋହନଗିରି ରାସ୍ତା, ସାନସୋରପାଲି-ଗଡ଼ିପିଣ୍ଡିକି ରାସ୍ତା, ଫୁଲକଣା-ଗଡ଼ିପିଣ୍ଡିକି ରାସ୍ତା, ରୋଗାଙ୍ଗୀ-ବଡ଼ଖିଲିପଦର ରାସ୍ତା ଓ ରେଣାପଦର-ପରୀକ୍ଷିତ ରାସ୍ତାଗୁଡ଼ିକର ଉନ୍ନତି କରିବା ବାବଦରେ ୧୫ ଲକ୍ଷ ଟଙ୍କା, ଗୁଣ୍ଡିହାଟ ନାଳ ଓ ବେଗୁନିଆ ଯୋର ଉପରେ ନିର୍ମିତ ଦୁଇଟି କଜ୍‌ୱେ ପାଇଁ ୩ ଲକ୍ଷ ଟଙ୍କା ଏବଂ ଟିକାବାଲି ଦୁଦର ସାଲକି ଉପରେ ନିର୍ମିତ ଅନ୍ୟ ଏକ କଜ୍‌ୱେ ପାଇଁ ୨ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି । ସେହିପରି ରାଇଦୁର୍ଗା ନଦୀରେ ଏକ ସେତୁ ସମେତ ଖେଦାପଡ଼ା ନାଳ, ଡାଙ୍ଗପାଲି ନାଳ, ଗୁଣ୍ଡିହାଟ ନାଳ, ସୁଲକି ନାଳ, ବେଗୁନିଆ ଯୋର ଏବଂ ସୁରୁଗୀ ନାଳ ଉପରେ କଜ୍‌ୱେଗୁଡ଼ିକର ନିର୍ମାଣ ପାଇଁ ୨୮ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି ।

---

## ଧାର୍ଯ୍ୟ ସମୟ ପୂର୍ବରୁ ଉତ୍ପାଦନ

ସୁନ୍ଦରଗଡ଼ ଜିଲ୍ଲାର କାନ୍ସବାହାଲ ଶିଳ୍ପାଞ୍ଚଳରେ ୧ କୋଟି ୧୦ ଲକ୍ଷ ଟଙ୍କା ବିନିଯୋଗରେ ପ୍ରତିଷ୍ଠିତ ଇଣ୍ଡୋ ଫ୍ଲୁଗେଟସ ଲିମିଟେଡ଼ରୁ ୧୯୮୪ ମସିହା ନଭେମ୍ବର ମାସରେ ଉତ୍ପାଦନ ଆରମ୍ଭ ହୋଇପାରିଛି । ଚଳିତ ବର୍ଷ ଜାନୁଆରୀ ମାସରେ ଏଥିରୁ ଉତ୍ପାଦନ ଆରମ୍ଭ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ବେଳେ ତାହାର ଦୁଇମାସ ପୂର୍ବରୁ ଉତ୍ପାଦନ ଆରମ୍ଭ ହେବା ଏକ ଉଲ୍ଲେଖନୀୟ ଘଟଣା ।

କଲିକତାର ବାଜୋରିଆ ଗ୍ରୁପ ଆନୁକୂଲ୍ୟରେ ଏହି ପ୍ରକଳ୍ପଟି ପ୍ରତିଷ୍ଠିତ ହୋଇଛି । ଏଥିପାଇଁ ଇପିକଲ ଓ ଓଡ଼ିଶା ଅର୍ଥ ନିଗମ ଋଣ ସାହାଯ୍ୟ ଯୋଗାଇଦେଇଛନ୍ତି । ଏଠାରୁ ଉତ୍ପାଦିତ ହେଉଥିବା ସ୍ଲାଇଡିଙ୍ଗ ଗେଟ ଭାଲଭ ସିଷ୍ଟମ ଏବଂ ରିଫ୍ରାକ୍ଟରିଜଗୁଡ଼ିକର ମାନ ଅତି ଉନ୍ନତ ବିସ୍ତରର ହୋଇଥିବାରୁ ଦେଶର ବଡ଼ ବଡ଼ ଇସ୍ପାତ କାରଖାନା ଯଥା :—ଭିଲାଇ, ବିଶାଖାପାଟଣା, ଦୁର୍ଗାପୁର ଓ ବୋକାରୋ ଇସ୍ପାତ କାରଖାନା ଏଠାରୁ ଜିନିଷ କିଣିବାକୁ ବରାଦ ଦେଇଛନ୍ତି । ଏଥି ପୂର୍ବରୁ ଇସ୍ପାତ କାରଖାନା ପାଇଁ ସ୍ଲାଇଡିଙ୍ଗ ଗେଟ୍ ଏବଂ ଏହାର ଯନ୍ତ୍ରାଂଶ ବିଦେଶରୁ ଆମଦାନୀ କରାଯାଉଥିଲା । ମାତ୍ର ଇଣ୍ଡୋ ଫ୍ଲୁଗେଟସ୍ ଲିମିଟେଡ଼ର ଉତ୍ପାଦିତ ପଦାର୍ଥ ଅପେକ୍ଷାକୃତ ଅଳ୍ପ ମୂଲ୍ୟରେ ମିଳିପାରୁଥିବାରୁ ଇସ୍ପାତ କାରଖାନା ପାଇଁ ଆବଶ୍ୟକ ପଡ଼ୁଥିବା ଉପରୋକ୍ତ ଜିନିଷଗୁଡ଼ିକ ଦେଶରୁ ମିଳିବା ସଙ୍ଗେ ସଙ୍ଗେ ବୈଦେଶିକ ମୁଦ୍ରା ସଞ୍ଚୟ କରାଯାଇ ପାରୁଛି ।

## ଲୁଣା ଅଞ୍ଚଳରେ ପାନୀୟ ଜଳ

ରାଜ୍ୟର ଉପକୂଳବର୍ତ୍ତୀ ଲୁଣା ଅଞ୍ଚଳରେ ଉତ୍କଟ ପାନୀୟ ଜଳ ସମସ୍ୟାର ସ୍ଥାୟୀ ସମାଧାନ କରିବା ଲାଗି ଅଗଷ୍ଟ ମାସ ୧୬ ତାରିଖରେ ଡେନ୍‌ମାର୍କର ରାଜଧାନୀ କୋପେନ୍ ହେଗେନ୍-ଠାରେ ଡେନ୍‌ମାର୍କ ସରକାର ଓ ଭାରତ ସରକାରଙ୍କ ମଧ୍ୟରେ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଯାଇଛି । ଏଥିପାଇଁ ଚଳିତ ମାସ ୧୨ ତାରିଖ ଠାରୁ ୧୬ ତାରିଖ ମଧ୍ୟରେ ଦ୍ୱିପାକ୍ଷିକ ଆଲୋଚନା ଅନୁଷ୍ଠିତ ହୋଇଛି ବୋଲି ଆଜି ଏଠାରେ ଗୃହ ନିର୍ମାଣ ଓ ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଡମ୍ବରୁଧର ଉଲାକା ପ୍ରକାଶ କରିଛନ୍ତି ଏହି ଚୁକ୍ତି ଅନୁଯାୟୀ 'ଡାନିଡ଼ା' ଜଳ ଯୋଗାଣ ପ୍ରକଳ୍ପର ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯିବ । ଏହି ପ୍ରକଳ୍ପଟି ୩ଟି ପର୍ଯ୍ୟାୟରେ କାର୍ଯ୍ୟକାରୀ ହେବାର ପ୍ରସ୍ତାବ ରହିଛି ବୋଲି ସୂଚନା ଦେଇ ଶ୍ରୀ ଉଲାକା କହିଲେ ଯେ ଏହି ପ୍ରଥମ ପର୍ଯ୍ୟାୟ ଚୁକ୍ତି ଅନୁଯାୟୀ ପୁରୀ ଜିଲ୍ଲାର ଡେଲାଙ୍ଗ ବ୍ଲକ, କଟକ ଜିଲ୍ଲାର ରାଜକନିକା ବ୍ଲକ ଓ ବାଲେଶ୍ୱର ଜିଲ୍ଲାର ଗୋପାଳପୁର ବ୍ଲକର ସମସ୍ତ ଚିହ୍ନିତ ଓ ଅଣଚିହ୍ନିତ ଜନବସତି ଗ୍ରାମକୁ ପାନୀୟ ଜଳ ଯୋଗାଇ ଦିଆଯିବ । ୯ କୋଟି ଟଙ୍କା ବ୍ୟୟ ଅଟକଳରେ କାର୍ଯ୍ୟକାରୀ ହେବାକୁ ଯାଉଥିବା ୧ମ ପର୍ଯ୍ୟାୟ କାର୍ଯ୍ୟ ଅତିଶୀଘ୍ର ଆରମ୍ଭ କରାଯାଇ ୧୯୮୭ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ସଂପୂର୍ଣ୍ଣ କରାଯିବ ଏବଂ ୫୪୫ଟି ଗ୍ରାମରେ ୧୨୩୮ଟି ନଳକୂପ ବସାଯିବ । ଏ ବାବଦରେ 'ଡାନିଡ଼ା' ୭ କୋଟି ୫୬ଲକ୍ଷ ଟଙ୍କା ସାହାଯ୍ୟ ଦେବେ । ସେହିପରି ଉକ୍ତ ତିନୋଟି ବ୍ଲକରେ ଆବଶ୍ୟକ ସ୍ଥଳେ ଦୁଇଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରିବାର ପ୍ରସ୍ତାବ ରହିଛି । ଏହା ବ୍ୟତୀତ ଆଉ କେତୋଟି ବ୍ଲକରେ ପରୀକ୍ଷାମୂଳକ ଭାବେ ଡ୍ରିଲିଂ କରାଯାଇ ୧୦୦ ରୁ ୧୫୦ଟି ନଳକୂପ ବସାଇବାକୁ ପ୍ରସ୍ତାବ ରହିଛି ବୋଲି ଶ୍ରୀ ଉଲାକା ସୂଚନା ଦେଇଛନ୍ତି । ଏହା ଫଳରେ ସେସବୁ ଲୁଣି ଅଞ୍ଚଳରେ ପ୍ରାୟ ୪ ଲକ୍ଷ ଲୋକ ଉପକୃତ ହୋଇପାରିବେ ।

ପ୍ରଥମ ପର୍ଯ୍ୟାୟରେ ସେହି ତିନୋଟି ବ୍ଲକରେ ବସାଯାଇଥିବା ହାଣ୍ଡପଂପ୍ ମଧ୍ୟରୁ ୩୭୮ଟି ହାଣ୍ଡପଂପ୍ ବଦଳାଯାଇ ନୂତନ ଉନ୍ନତ ଧରଣର ହାଣ୍ଡପଂପ୍ ବସାଯିବ । ଏହା ବ୍ୟତୀତ ଯେଉଁ ନଳକୂପ ଗୁଡ଼ିକର ଜଳରେ ଅତ୍ୟଧିକ ଲୌହ ଅଂଶ ଥିବା ଯୋଗୁ ପାନୀୟ ଉପଯୋଗୀ ହେଉନାହିଁ, ସେହି ସ୍ଥାନରେ ନଳକୂପ ଜଳକୁ ବ୍ୟବହାର ଉପଯୋଗୀ କରିବା ପାଇଁ ଲୌହ ଦୂରୀକରଣ ଯନ୍ତ୍ର ବସାଯିବ । ବିଭିନ୍ନ କାର୍ଯ୍ୟକ୍ରମର ରକ୍ଷଣାବେକ୍ଷଣ ବିଷୟରେ ଉପଯୁକ୍ତ ତାଲିମ ଦେବା ପାଇଁ ୬ ଲକ୍ଷ ଟଙ୍କା ବ୍ୟୟରେ ସଂପୂର୍ଣ୍ଣ ହେବାକୁ ଯାଉଥିବା ପଲାଶୁଣି ତାଲିମ କେନ୍ଦ୍ରକୁ ସଂପୂର୍ଣ୍ଣ କାର୍ଯ୍ୟକ୍ଷମ କରାଯିବ । ପ୍ରଥମ ପର୍ଯ୍ୟାୟରେ ଏହି ତାଲିମ କାର୍ଯ୍ୟକ୍ରମ ପାଇଁ 'ଡାନିଡ଼ା' ଆବଶ୍ୟକୀୟ ଅର୍ଥ ଯୋଗାଇ ଦେବେ । ବିଭିନ୍ନ ପ୍ରକାର ଗବେଷଣା ଓ ଉନ୍ନୟନ କାର୍ଯ୍ୟ ଏହି ୧ମ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ । ଏହି ପ୍ରକଳ୍ପର ୨ୟ ଓ ୩ୟ ପର୍ଯ୍ୟାୟରେ ଅନ୍ୟ ୧୭ଟି ବ୍ଲକରେ ଏହିପରି କାର୍ଯ୍ୟକ୍ରମ ସବୁ କାର୍ଯ୍ୟକାରୀ କରାଯାଇ ସେସବୁ ଅଞ୍ଚଳର ପାନୀୟ ଜଳ ସମସ୍ୟା ସମାଧାନ କରାଯିବ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଉପକୂଳବର୍ତ୍ତୀ ଲୁଣା ଅଞ୍ଚଳମାନଙ୍କରେ ପାନୀୟ ଜଳ ସମସ୍ୟାର ସ୍ଥାୟୀ ସମାଧାନ ଲାଗି ଗତ କେତେ ବର୍ଷ ହେଲା ଦାବୀ ହୋଇଆସୁଥିଲା । ଏଥିପାଇଁ

୧୯୮୩-୮୪ ମସିହାରୁ 'ଡ୍ରାନିଡ୍ରା' ସହାୟତାରେ କଟକ, ପୁରୀ ଓ ବାଲେଶ୍ୱରର କେତେକ ବ୍ଲକରେ ଗୋଟିଏ ପରୀକ୍ଷାମୂଳକ ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ଏହି ଯୋଜନା ସଫଳ ହେବା ପରେ କଟକ ଜିଲାର ୧୦ଟି ବ୍ଲକ, ପୁରୀ ଜିଲାର ୯ଟି ବ୍ଲକ ଏବଂ ବାଲେଶ୍ୱର ଜିଲାର ଗୋଟିଏ ବ୍ଲକ, ଏହିପରି ୨୦ଟି ବ୍ଲକ ଅଞ୍ଚଳରେ 'ଡ୍ରାନିଡ୍ରା' ସହାୟତାରେ ନଳକୂପ ଓ ପାରପ୍ ଯୋଗେ ଜଳ ଯୋଗାଣ କରିବାର ସମ୍ଭାବନା ବର୍ତ୍ତମାନ ଉଜ୍ଜ୍ୱଳତର ହୋଇ-ଉଠିଛି । 'ଡ୍ରାନିଡ୍ରା' ପ୍ରକଳ୍ପ ଅନ୍ତର୍ଭୁକ୍ତ ଏହି ୨୦ଟି ବ୍ଲକରେ ସାଧାରଣ ଭାବେ ଅନୁସୃତ ହେଉଥିବା ବୈଷୟିକ କୌଶଳ ଉପଯୋଗୀ ହୋଇପାରୁ ନାହିଁ । ତେଣୁ, ସେସବୁ ଅଞ୍ଚଳରେ 'ଡ୍ରାନିଡ୍ରା' ସହାୟତାରେ ନୂତନ କାରିଗରୀ କୌଶଳ ପ୍ରୟୋଗ କରାଯାଇ ନଳକୂପ ଇତ୍ୟାଦି ସ୍ଥାପନ କରାଯିବ ।

---

## ରାଜ୍ୟ ସରକାରଙ୍କ ଉଦ୍ୟମକୁ ପ୍ରଧାନମନ୍ତ୍ରୀଙ୍କ ପ୍ରଶଂସା

କଳାହାଣ୍ଡି ଓ ଫୁଲବାଣୀ ଜିଲାର ମରୁଡ଼ି ପ୍ରବଣ ଅଞ୍ଚଳରେ ଦେଖାଦେଇଥିବା ଜିରୋଟ ପରିସ୍ଥିତିକୁ ମୁକାବିଲା କରିବା ଲାଗି ରାଜ୍ୟ ସରକାର ଯେପରି ଉଦ୍ୟମ କରିଛନ୍ତି, ପ୍ରଧାନ ମନ୍ତ୍ରୀ ସେଥିରେ ସନ୍ତୋଷ ପ୍ରକାଶ କରିଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଦେଇଥିବା ଏକ ପତ୍ରରେ ଅଧିକାଂଶ ଜଳକ୍ଲିଷ୍ଟ ଗ୍ରାମରେ ପାନୀୟ ଜଳ ଯୋଗାଣ ଏବଂ ଦରିଦ୍ରତମ ପରିବାରଙ୍କ ଅର୍ଥନୈତିକ ଉତ୍ଥାନ କାର୍ଯ୍ୟକ୍ରମ ପରି ଦାରିଦ୍ର୍ୟ ବିରୋଧୀ କାର୍ଯ୍ୟକ୍ରମ ଅନୁଯାୟୀ କାର୍ଯ୍ୟକାରୀ ହେଉଥିବା ମାଛଚାଷ ଯୋଜନାର ସାଫଲ୍ୟ ସଂପର୍କରେ ପ୍ରଧାନ ମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧି ବିଶେଷ ଭାବରେ ଉଲ୍ଲେଖ କରିଛନ୍ତି । ସେଠାରେ ପରିଲକ୍ଷିତ ଅନାଟନ ସଂପର୍କରେ ଉଦ୍‌ବେଗ ପ୍ରକାଶ କରିଥିଲେ ହେଁ ରାଜ୍ୟ ପ୍ରଶାସନ ଦ୍ୱାରା ସାଧାରଣ ବଣ୍ଟନ ଏବଂ ଭୋଜନ କେନ୍ଦ୍ର ଜରିଆରେ କ୍ଷୁଧାର୍ତ୍ତଙ୍କ ପାଇଁ ଯେଉଁ ପଦକ୍ଷେପ ନିଆଯାଇଛି, ସେ ତା'ର ଭୂୟସୀ ପ୍ରଶଂସା କରିଛନ୍ତି । ଅତ୍ୟାବଶ୍ୟକ ସାମଗ୍ରୀ ଗୁଡ଼ିକର ଯୋଗାଣ ବ୍ୟବସ୍ଥାକୁ ନିୟମିତ ଓ ଅଧିକ ଦୃଢ଼ୀଭୂତ କରିବା ଏବଂ ତାହାକୁ ସଠିକ୍ ରୂପେ ପରିଚାଳନା କରି ସରକାରଙ୍କୁ ବିବରଣୀ ଦେବା ଉପରେ ପ୍ରଧାନ ମନ୍ତ୍ରୀ ଗୁରୁତ୍ୱ ଆରୋପ କରିଛନ୍ତି ।

ଏହି ପରିପ୍ରେକ୍ଷୀରେ ଦରିଦ୍ରତମ ଲୋକମାନଙ୍କୁ ପର୍ଯ୍ୟାପ୍ତ ସମ୍ବଳ ଯୋଗାଇ ଦେବା ଆବଶ୍ୟକ ବୋଲି ଗୁରୁତ୍ୱ ଆରୋପ କରି ପ୍ରଧାନ ମନ୍ତ୍ରୀ କହିଛନ୍ତି ଯେ ସେମାନେ ଏହାଦ୍ୱାରା ପ୍ରାକୃତିକ ବିପର୍ଯ୍ୟୟ ତଥା ଅପ୍ରତ୍ୟାଶିତ ଅନାଟନଜନିତ କଷ୍ଟକର ପରିସ୍ଥିତିର ମୁକାବିଲା କରିପାରିବେ । କଳାହାଣ୍ଡି ଜିଲାରେ ବିଭିନ୍ନ ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ମରୁଡ଼ିଜନିତ ଦୁର୍ଦ୍ଦଶାରୁ ଜିଲାକୁ ରକ୍ଷା କରଯାଇ ପାରିବ ବୋଲି ସେ କହିଛନ୍ତି । ଅଳ୍ପ ପାଣି ଆବଶ୍ୟକ କରୁଥିବା ମକା ଓ ମାଣ୍ଡିଆ ପରି ଫସଲ ଏବଂ ଉପଯୁକ୍ତ ନିପାଣିଆ ଧାନକୁ ଅଦଳ-ବଦଳ କରି ଚାଷ କରିବା ଲାଗି ଶ୍ରୀ ଗାନ୍ଧି ପରାମର୍ଶ ଦେଇଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ଚିନାବାଦାମ, ସୁହା, କଫି ଓ ରବର ଭଳି ଅର୍ଥକରୀ ଫସଲଗୁଡ଼ିକୁ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଯେପରି ପରୀକ୍ଷାମୂଳକ ଭାବେ ଚାଷ କରାଯାଇ ସଫଳତା ହାସଲ ହୋଇଛି, ତାହାକୁ ପ୍ରଧାନ ମନ୍ତ୍ରୀ ପ୍ରଶଂସା କରିଛନ୍ତି । ରାଜ୍ୟର ବହୁ ଅଞ୍ଚଳରେ ବର୍ତ୍ତମାନ କାଜୁବାଦାମ ଚାଷ ହେଉଛି ।

ପ୍ରଧାନ ମନ୍ତ୍ରୀ ତାଙ୍କ ପତ୍ରରେ ଗ୍ରାମାଞ୍ଚଳରେ ରାସ୍ତା, ସେତୁ ଓ କଲ୍‌ଭର୍ଟ ଇତ୍ୟାଦି ପରି ଭିତ୍ତିଭୂମିକ ପ୍ରକଳ୍ପର ନିର୍ମାଣ ସହିତ ଗ୍ରାମ୍ୟ ନିଯୁକ୍ତି କାର୍ଯ୍ୟକ୍ରମକୁ ସଂଶ୍ଳିଷ୍ଟ କରିବା ଲାଗି ପରାମର୍ଶ ଦେଇ କହିଛନ୍ତି ଯେ ଏତଦ୍ୱାରା ଦୁର୍ଗମ ଅଞ୍ଚଳକୁ ଜିରୋଟ ସମୟରେ ଯଥାଶୀଘ୍ର ନିୟମିତ ଭାବରେ କୃଷି ସାମଗ୍ରୀ ଓ ଅତ୍ୟାବଶ୍ୟକୀୟ ପଦାର୍ଥ-ଗୁଡ଼ିକର ଚାଲାଣ ହୋଇପାରିବ ଏବଂ କୃଷିଜାତ ପଦାର୍ଥର ବିକ୍ରି-ବଟା ଓ ଭୋଜନ କାର୍ଯ୍ୟକ୍ରମ ସୁଗମ ହୋଇପାରିବ । କଳାହାଣ୍ଡି ପରି ଅନଗ୍ରସର ଜିଲାଗୁଡ଼ିକରେ ସରକାରୀ କାର୍ଯ୍ୟକ୍ରମକୁ ଦକ୍ଷତାର ସହିତ କାର୍ଯ୍ୟକାରୀ କରିବା ପାଇଁ ସେଠାକୁ ଯେପରି ସୁଦକ୍ଷ ଅଫିସର-ମାନେ ଯାଇପାରିବେ, ସେଥିପାଇଁ ସେମାନଙ୍କୁ ଉତ୍ସାହିତ କରିବା ଲାଗି ଉପଯୁକ୍ତ ପ୍ରୋତ୍ସାହନ ନୀତି ତୁରନ୍ତ ପ୍ରଚଳନ କରିବାକୁ ଶ୍ରୀ ରାଜୀବ ଗାନ୍ଧି ପରାମର୍ଶ ଦେଇଛନ୍ତି । ପ୍ରଧାନ ମନ୍ତ୍ରୀଙ୍କ ସାଂପ୍ରତିକ କଳାହାଣ୍ଡି ଗସ୍ତ ସମୟରେ ଏ ସଂପର୍କରେ ଆଲୋଚନା କରାଯାଇ ଏପରି ଅଫିସରମାନଙ୍କୁ ସ୍ୱତନ୍ତ୍ର ବେତନ ପ୍ରଦାନ, ସେମାନଙ୍କର ପିଲାମାନଙ୍କ ଅଧ୍ୟୟନ ଲାଗି ରାଜ୍ୟର ସର୍ବୋତ୍କୃଷ୍ଟ ଶିକ୍ଷାନୁଷ୍ଠାନରେ ରହିବା ସୁବିଧା, ଅଫିସରଙ୍କ ପାଇଁ ବାସଗୃହ ଯୋଗାଣ ଏବଂ ପରବର୍ତ୍ତୀ ସମୟରେ ସେମାନଙ୍କୁ ସେମାନଙ୍କ ଇଚ୍ଛାନୁଯାୟୀ ବଦଳି ବ୍ୟବସ୍ଥା ଏହି ପ୍ରୋତ୍ସାହନ ନୀତିର ଅନ୍ତର୍ଭୁକ୍ତ କରାଯିବ ବୋଲି ସୂଚନା ଦିଆଯାଇଛି । ଏତଦ୍‌ଦ୍ୱାରା ରାଜ୍ୟର ଦୁର୍ଦ୍ଦଶାଗ୍ରସ୍ତ ଅଞ୍ଚଳଗୁଡ଼ିକରେ ସୁଦକ୍ଷ ଅଫିସରମାନଙ୍କୁ ମୁତୟନ କରିବା ଦିଗରେ ଏକ ସୁସ୍ଥ ପ୍ରଶାସନିକ ବାତାବରଣ ସୃଷ୍ଟି ହୋଇପାରିବ ବୋଲି ପ୍ରଧାନ ମନ୍ତ୍ରୀ ଆଶା ପ୍ରକାଶ କରିଛନ୍ତି । ସେହିସବୁ ଅଞ୍ଚଳରେ ଅଫିସରମାନେ ଯେଉଁ ସାଫଲ୍ୟ ହାସଲ କରିବେ, ତାହା ହିଁ ହେବ ସେମାନଙ୍କର ଉପଯୁକ୍ତ ପୁରସ୍କାର ।

ପ୍ରଧାନ ମନ୍ତ୍ରୀଙ୍କ ପରାମର୍ଶ ଅନୁଯାୟୀ କଳାହାଣ୍ଡି ଜିଲାରେ ତୁରନ୍ତ ସାହାଯ୍ୟ ପାଇଁ ବହୁବିଧ ଯୋଜନା ଆରମ୍ଭ କରାଯାଇଛି । ଖରିଫ୍ ଧାନଚାଷ ପାଇଁ ଏକ ବ୍ୟାପକ ଶସ୍ୟବୀମା ଯୋଜନା ପ୍ରଚଳନ କରାଯାଇଛି । ତଦନୁଯାୟୀ ଅର୍ଥ ଲଗାଣକାରୀ ସଂସ୍ଥା-ଗୁଡ଼ିକରୁ ଋଣ ନେଇଥିବା ଚାଷୀମାନେ ଆପେ ଆପେ ଏହି ବୀମା ଯୋଜନାର ସୁବିଧା ସୁଯୋଗ ନେଇପାରିବେ । ଏହି ଅଞ୍ଚଳରେ ୧୫ଟି ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପକୁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକାରୀ କରାଯାଇଛି । ଯଦ୍ୱାରା କି ୧ଲକ୍ଷ ୫୭ହଜାର ହେକ୍ଟର ଜମି ଜଳସେଚିତ ହୋଇପାରିବ । ବୋଡ଼େନ-ସିନାପାଲ୍ଲୀ ରାସ୍ତାରେ ଉଦାନ୍ତି ଓ ସୁନ୍ଦର ନଦୀରେ ୨ଟି ସେତୁର ନିର୍ମାଣକାର୍ଯ୍ୟ ସଂପୂର୍ଣ୍ଣ କରିବା ଲାଗି ଆଶୁ ପଦକ୍ଷେପ ନିଆଯାଇଛି ଏବଂ ଏହାଦ୍ୱାରା ସିନାପାଲ୍ଲୀ ଓ ବୋଡ଼େନ ବ୍ଲକର ଦୁର୍ଗମ ଅଞ୍ଚଳଗୁଡ଼ିକୁ ଯାତାୟତ କରିବା ସୁଗମ ହୋଇଯିବ । ଗ୍ରାମାଞ୍ଚଳରେ ସବୁଦିନିଆ ରାସ୍ତା ଯୋଗାଯୋଗ ସ୍ଥାପନ କରିବା ପାଇଁ ଅନ୍ୟାନ୍ୟ ନଦୀନାଳ ଉପରେ ସେତୁ ଓ କଲ୍‌ଭର୍ଟ ନିର୍ମାଣ ଏବଂ ରାସ୍ତାଗୁଡ଼ିକର ଉନ୍ନତିବିଧାନ ଅଗ୍ରାଧିକାର ଭିତ୍ତିରେ ହାତକୁ ନିଆଯାଇଛି । ନୂଆପଡ଼ା ପରି ଏକ ଅଧିକ କ୍ଷତିଗ୍ରସ୍ତ ସବ୍‌ଡିଭିଜନକୁ ଜିଲା ସଦର ମହକୁମା ସହିତ ସ୍ଥାୟୀ ଯୋଗାଯୋଗ ସ୍ଥାପନ କରିବା ଲାଗି ରାସ୍ତାଗୁଡ଼ିକରେ ଥିବା କଲଭର୍ଟଗୁଡ଼ିକ ସ୍ଥାନରେ ସ୍ଥାୟୀ ସେତୁ ନିର୍ମାଣ କରାଯିବ । ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଜନାକୁ ଅଗ୍ରାଧିକାର ଭିତ୍ତିରେ ସଂପ୍ରସାରଣ କରାଯିବ । ଜଳକ୍ଲିଷ୍ଟ ଗ୍ରାମମାନଙ୍କ ମଧ୍ୟରୁ ଶତକଡ଼ା ୯୦ ଭାଗ ଗ୍ରାମରେ ପାନୀୟ ଜଳ ଯୋଗାଣ ପାଇଁ ନଳକୂପ ଓ ପକ୍କାକୂଅ ଖୋଳାଯାଉଛି । ଅବଶିଷ୍ଟ ଗ୍ରାମଗୁଡ଼ିକରେ ନଳକୂପ ବସାଇବା କାର୍ଯ୍ୟ ଚାଲିଛି ।

ଜିଲ୍ଲାରେ ଆଂଶିକ କ୍ଷତିଗ୍ରସ୍ତ ହୋଇଥିବା ଫସଲକୁ ରକ୍ଷା କରିବା ପାଇଁ ଅସ୍ଥାୟୀ ଆଡ଼ିବନ୍ଧ ନିର୍ମାଣ କରିବା ସଙ୍ଗେ ସଙ୍ଗେ ବହୁସଂଖ୍ୟକ ଡିଜେଲ୍ ପମ୍ପ୍ ବସାଇବାକୁ ସରକାର ପଦକ୍ଷେପ ନେଇଛନ୍ତି । ସଂପ୍ରତି ଜିଲ୍ଲାରେ ବ୍ୟାପକ ବର୍ଷା ହୋଇଥିବା ଫଳରେ ଚାଷୀମାନେ କୃଷିକାର୍ଯ୍ୟରେ ଲାଗିଗଲେଣି । ବହୁ କ୍ଷତିଗ୍ରସ୍ତ ଅଞ୍ଚଳର କୃଷି ଶ୍ରମିକ ଓ କ୍ଷୁଦ୍ରଚାଷୀମାନଙ୍କ ସୁବିଧା ପାଇଁ ଶ୍ରମଭିତ୍ତିକ କାର୍ଯ୍ୟସବୁ କାର୍ଯ୍ୟକାରୀ କରାଯାଉଛି । ରାଜ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ କେନ୍ଦ୍ର ସରକାର ଚଳିତ ବର୍ଷ ଅପ୍ରେଲ ମାସରେ ପ୍ରାୟ ୯ କୋଟି ଟଙ୍କା ମଞ୍ଜୁର କରି-ଥିଲେ । ସେହିସବୁ କାର୍ଯ୍ୟ ସମଗ୍ର ରାଜ୍ୟର ୨୦୧ଟି ବ୍ଲକ ଅନ୍ତର୍ଗତ ୧୪ ହଜାର ମରୁଡ଼ିଗ୍ରସ୍ତ ଗ୍ରାମରେ କାର୍ଯ୍ୟକାରୀ ହେଉଛି । କଳାହାଣ୍ଡି ଜିଲ୍ଲାର ୮୩୦ଟି ଗ୍ରାମ ବିଶେଷ ଭାବରେ ମରୁଡ଼ିଗ୍ରସ୍ତ ହୋଇଛି । ଶ୍ରମଭିତ୍ତିକ ରିଲିଫ୍ କାର୍ଯ୍ୟ ସମେତ ନୂଆ ନଳକୂପ ବସାଇବା ଏବଂ ଗ୍ରାମମରୁଡ଼ି ଅଞ୍ଚଳର ଚାଷୀମାନଙ୍କୁ ରିହାତି ହାରରେ ଆଉଥରେ ବିହନ ଇତ୍ୟାଦି ଯୋଗାଇ ଦିଆଯାଇଛି । ବିଶେଷ କ୍ଷତିଗ୍ରସ୍ତ ଅଞ୍ଚଳରେ ଜରୁରୀ ଭୋଜନ କେନ୍ଦ୍ରମାନ ଖୋଲାଯାଇଛି ।

ପୂର୍ବତନ କଳାହାଣ୍ଡି ଗଡ଼ଜାତ ଏବଂ ଖଡ଼ିଆଳ ଜମିଦାରିକୁ ନେଇ ଗଠିତ କଳାହାଣ୍ଡି ଜିଲାର ଆୟତନ ହେଉଛି ୧୧ ହଜାର ୭୭୨ ବର୍ଗ କିଲୋମିଟର ଏବଂ ଏହା ଏକ ଆଦିବାସୀ ଓ ହରିଜନ ବହୁଳ ଅଞ୍ଚଳ । ରାଜ୍ୟରେ ବାର୍ଷିକ ହାରାହାରି ୧୪୮ ସେ: ମି: ବର୍ଷା ହେବା ସ୍ଥଳେ ଏ ଜିଲ୍ଲାରେ ବାର୍ଷିକ ୧୧୦ ସେ: ମି: ରୁ ୧୩୫ ସେ: ମି: ବର୍ଷା ହୋଇଥାଏ । ସ୍ୱଳ୍ପ ବୃଷ୍ଟି ଯୋଗୁଁ କୃଷି ଉତ୍ପାଦନ ବ୍ୟାହତ ହେଉଛି ଏବଂ ଅତୀତରୁ ରହିଆସିଥିବା ଭିତ୍ତିଭୂମିକ ଅଭାବ ଅସୁବିଧା ଫଳରେ ସେ ଅଞ୍ଚଳରେ ଆର୍ଥିକ ଅବସ୍ଥା ଦୁର୍ବଳ ହୋଇଯାଇଛି ।

ଗତ ୫ ବର୍ଷ ମଧ୍ୟରେ 'ମରୁଡ଼ି ପ୍ରବଣ ଅଞ୍ଚଳ କାର୍ଯ୍ୟକ୍ରମ' କାର୍ଯ୍ୟକାରୀ କରି କୃଷି ଉତ୍ପାଦନ କ୍ଷେତ୍ରରେ ଦେଖାଦେଉଥିବା ପ୍ରତିବନ୍ଧକ ଦୂର କରିବା, ମଧ୍ୟମ ଜଳସେଚନ ପ୍ରକଳ୍ପ ନିର୍ମାଣ କରିବା ଏବଂ ଭିତ୍ତିଭୂମିକ ଅସୁବିଧା ଦୂର କରିବା ଦିଗରେ ରାଜ୍ୟ ସରକାର ବିଶେଷ ଉଦ୍ୟମ କରିଆସୁଛନ୍ତି । ଏହି ଜିଲ୍ଲାରେ ୧୯୭୮-୭୯ ମସିହାରେ ୩ ଲକ୍ଷ ୪୮ ହଜାର ଟନ୍ ଖାଦ୍ୟଶସ୍ୟ ଉତ୍ପାଦିତ ହୋଇଥିବା ସ୍ଥଳେ ଷଷ୍ଠ ଯୋଜନା ଶେଷ ସୁଦ୍ଧା ଏହା ୪ ଲକ୍ଷ ୫୩ ହଜାର ଟନ୍‌କୁ ବୃଦ୍ଧି ପାଇଛି । ଜିଲ୍ଲାର ୧୮ଟି ବ୍ଲକ୍ ମଧ୍ୟରୁ ୧୧ଟି ବ୍ଲକ୍‌ରେ 'ମରୁଡ଼ି ପ୍ରବଣ ଅଞ୍ଚଳ କାର୍ଯ୍ୟକ୍ରମ' କାର୍ଯ୍ୟକାରୀ କରାଯାଇ କ୍ଷୁଦ୍ର ଜଳସେଚନ ସୁବିଧାର ପ୍ରସାର କରିବା, ମୃତ୍ତିକା ସଂରକ୍ଷଣ, କ୍ଷୁଦ୍ର ଜଳଭଣ୍ଡାର ନିର୍ମାଣ କରିବା ଏବଂ ବନୀକରଣ, ବିଶେଷତଃ ଉଦ୍ୟାନ ବନୀକରଣ ଯୋଜନା ହାତକୁ ନିଆଯାଇଛି । ମରୁଡ଼ି ପ୍ରବଣ ଅଞ୍ଚଳଗୁଡ଼ିକରେ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ସମେତ କ୍ଷୁଦ୍ର ଜଳଭଣ୍ଡାର ନିର୍ମିତ ହେବା ଫଳରେ ଅଧିକ ୧୧ ହଜାର ହେକ୍ଟର ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯାଇପାରିଛି ।

## ସିନାପାଲି ବ୍ଲକରେ ଖାଦ୍ୟ ଯୋଗାଣ ଓ ଶ୍ରମଭିତ୍ତିକ କାର୍ଯ୍ୟକ୍ରମ

କଳାହାଣ୍ଡି ଜିଲ୍ଲା ସିନାପାଲି ବ୍ଲକ୍‌ର ୧୨୬ ଟି ଗ୍ରାମ ମଧ୍ୟରୁ ୧୧୮ଟି ଗ୍ରାମରେ ମରୁଡ଼ି ଯୋଗୁଁ ଶତକଡ଼ା ୫୦ ଭାଗରୁ ୭୫ ଭାଗ କିମ୍ବା ତଦୂର୍ଦ୍ଧ୍ୱ ଫସଲ କ୍ଷତିଗ୍ରସ୍ତ ହୋଇଥିଲା । ବର୍ତ୍ତମାନ ବ୍ଲକର ସବୁ ଅଞ୍ଚଳରେ ଭଲ ବର୍ଷା ହୋଇଥିବାରୁ ଖରିଫ ଫସଲ ଭଲ ହେବାର ଆଶା କରାଯାଉଛି । ଲୋକମାନେ କେତେକ ସ୍ଥାନରେ ଜୋଆର ଜାତୀୟ ବିଭିନ୍ନ ଫସଲ ଅମଳ କରିବାରେ ଲାଗିଛନ୍ତି ।

ଏହି ବ୍ଲକ୍‌ରେ ବର୍ତ୍ତମାନ ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ସରକାରଙ୍କ ପକ୍ଷରୁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି । ୧୧୬ ଟି ଗ୍ରାମରେ ଜରୁରୀ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ୩,୫୦୦ ଜଣଙ୍କୁ ଏବଂ ୮୨ଟି ଅଙ୍ଗନୱାଡ଼ି କେନ୍ଦ୍ର ଜରିଆରେ ୯୫ଟି ଗ୍ରାମର ୫,୫୦୦ ଜଣ ଶିଶୁ ଓ ଗର୍ଭବତୀ ମହିଳାଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ବିଦ୍ୟାଳୟରେ ଭୋଜନ କାର୍ଯ୍ୟକ୍ରମ ଅନୁଯାୟୀ ୬୦ଟି ପ୍ରାଥମିକ ସ୍କୁଲରେ ୩ ହଜାର ପିଲାଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଛି । ସେହିପରି ଭାରତୀୟ ରେଡ଼-କ୍ରସ୍ ଜରିଆରେ ୧ହଜାର ଜଣ ମଧ୍ୟ ଖାଦ୍ୟ ପାଉଛନ୍ତି ।

ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ଅନୁଯାୟୀ ଏହି ବ୍ଲକ୍‌ର ୨୪ଟି ଗ୍ରାମରେ ଜଙ୍ଗଲ ବିଭାଗର ଉଦ୍ୟମରେ ଟ୍ରେଂଚ ଫେନ୍‌ସିଂ କାର୍ଯ୍ୟ ଆରମ୍ଭ ହୋଇଗଲାଣି ଏବଂ ଏ ବାବଦରେ ୨ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଏହା ବ୍ୟତୀତ ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ୧୦ଟି ଗ୍ରାମର ଶ୍ରମିକମାନଙ୍କୁ ନିଯୁକ୍ତି କରି ବୃକ୍ଷ ରୋପଣ ହୋଇଥିବା ଅଞ୍ଚଳ ଚତୁଃପାର୍ଶ୍ୱରେ ଟ୍ରେଂଚ ଫେନ୍‌ସିଂ କରାଯାଉଛି । ଏ ବାବଦରେ ୧ଲକ୍ଷ ୫୬ ହଜାର ୯୫୫ ଟଙ୍କା ବ୍ୟୟ ଅଟକଳ କରାଯାଇ ୧୬ଟି ଗ୍ରାମକୁ ଏହି କାର୍ଯ୍ୟର ଅନ୍ତର୍ଭୁକ୍ତ କରାଯିବ । ସେହିପରି ସ୍ଥାନୀୟ ବି. ଡ଼ି. ଓ.ଙ୍କ ଉଦ୍ୟମରେ ୮୩ଟି ଗ୍ରାମରେ ଥିବା ରାସ୍ତାଘାଟ ଗୁଡ଼ିକର ଉନ୍ନୟନ କରାଯାଇ ବହୁ ଶ୍ରମିକଙ୍କୁ କାମଧନ୍ଦା ଯୋଗାଇ ଦିଆଯିବ । ଆଜିସୁଦ୍ଧା ୬୦ଟି ଗ୍ରାମର ରାସ୍ତାରେ ମୋରମ୍ ପକାଇବା କାର୍ଯ୍ୟ ହାତକୁ ନିଆଯାଇ ସ୍ଥାନୀୟ ଅଞ୍ଚଳର ଶ୍ରମିକମାନଙ୍କୁ ନିଯୁକ୍ତି କରାଯାଇଛି । ସାଂପ୍ରତିକ ବର୍ଷା ଯୋଗୁଁ ଅବଶିଷ୍ଟ ୨୩ଟି ଗ୍ରାମର ରାସ୍ତାକାର୍ଯ୍ୟ ବ୍ୟାହତ ହୋଇଛି । ରାସ୍ତାଘାଟଗୁଡ଼ିକର ଉନ୍ନୟନ ପାଇଁ ବି. ଡ଼ି. ଓ.ଙ୍କ ଜରିଆରେ ଯେଉଁସବୁ ଶ୍ରମଭିତ୍ତିକ କାର୍ଯ୍ୟ କରିବାକୁ ଲକ୍ଷ୍ୟ ରଖାଯାଇଛି, ସେ ବାବଦରେ ସମୁଦାୟ ୩ଲକ୍ଷ ୭୩ହଜାର ୫୦୦ ଟଙ୍କା ବ୍ୟୟ କରାଯିବ ।

ସାଧାରଣ ବଣ୍ଟନ ବ୍ୟବସ୍ଥା ଅନୁଯାୟୀ ଗତ ଜୁଲାଇ ମାସରେ ୩୦୦ କ୍ୱିଣ୍ଟାଲ ଚାଉଳ ବିକ୍ରୟ ନିମନ୍ତେ ଉଠାଯାଇଥିଲା । ଯଥେଷ୍ଟ ପରିମାଣର ଚାଉଳ ଯେପରି ମହଜୁଦ୍ ରହେ, ସେ ଦିଗରେ ବିହିତ ବ୍ୟବସ୍ଥା କରାଯାଇଛି ।

## ଗାଡ଼ି ଚଳାଚଳ ସଂପର୍କରେ

ଭୁବନେଶ୍ୱର ପୌର ଅଞ୍ଚଳସ୍ଥିତ ପ୍ରଧାନ ରାସ୍ତାମାନଙ୍କରେ ଚଳାଚଳ କରୁଥିବା ମଟରଗାଡ଼ିଗୁଡ଼ିକ ବାରମ୍ବାର ଦୁର୍ଘଟଣା ଘଟାଉ-ଥିବାରୁ ଜନସାଧାରଣଙ୍କ ଧନ ଓ ଜୀବନ ବିପନ୍ନ ହେଉଛି । ଜନସାଧାରଣଙ୍କ ଧନ ଓ ଜୀବନର ନିରାପତ୍ତା ଏବଂ ସର୍ବସାଧା-ରଣଙ୍କ ଯାତାୟତର ସୁବିଧା ଦୃଷ୍ଟିରୁ ଗାଡ଼ି ଚଳାଚଳ ଉପରେ ନିୟନ୍ତ୍ରଣ କରିବା ଜିଲ୍ଲା କର୍ତ୍ତୃପକ୍ଷ ଉପଲବ୍ଧି କରି ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ଓଡ଼ିଶା ମଟର ଭେହିକଲ ଆଇନ ଅନୁଯାୟୀ ଏକ ଇସ୍ତାହାର ଜାରୀ କରିଛନ୍ତି । ଏହା ୧-୯-୮୫ ତାରିଖଠାରୁ କାର୍ଯ୍ୟକାରୀ ହେବ ।

ଏହି ଇସ୍ତାହାର ଅନୁଯାୟୀ ଭୁବନେଶ୍ୱର ପୌର ଅଞ୍ଚଳରେ ଚଳାଚଳ କରୁଥିବା ମଟର ଗାଡ଼ିଗୁଡ଼ିକର ଗତି ନିୟନ୍ତ୍ରଣ କରାଯାଇଛି । ବଡଗାଡ଼ି (ଟ୍ରକ, ବସ୍ ଇତ୍ୟାଦି) ଘଣ୍ଟା ପ୍ରତି ୨୦ କି: ମି:, ଛୋଟଗାଡ଼ି (କାର, ଜିପ୍ ଇତ୍ୟାଦି) ଘଣ୍ଟା ପ୍ରତି ୪୫ କି: ମି: ଏବଂ ଦୁଇଚକିଆ ମଟର-ଗାଡ଼ି (ସ୍କୁଟର, ମଟର ସାଇକେଲ ଇତ୍ୟାଦି) ଘଣ୍ଟା ପ୍ରତି ୩୦ କି: ମି: ବେଗରେ ଯାତାୟାତ କରିବ ।

ସେହିପରି କୌଣସି ଟ୍ରକ ପୂର୍ବାହ୍ନ ୮ଘଣ୍ଟା ୩୦ ମିନିଟ୍‌ଠାରୁ ୧୧ଘଣ୍ଟା ୩୦ ମିନିଟ୍ ଏବଂ ଅପରାହ୍ନ ଘ ୩'୩୦ ମିନିଟ୍‌ଠାରୁ ଘ୮'୩୦ ମିନିଟ ମଧ୍ୟରେ କଳ୍ପନା ଛକଠାରୁ ରାଜଭବନ ଛକ ପର୍ଯ୍ୟନ୍ତ ନୂଆ ଓ ପୁରୁଣା ରାଜପଥରେ, ବାଣୀବିହାର ଛକରୁ ରାଜମହଲ ଛକ ପର୍ଯ୍ୟନ୍ତ ଦୁଇପାଖ ବନପଥରେ ଏବଂ ଆଚାର୍ଯ୍ୟ ବିହାର ଛକଠାରୁ ଏ. ଜି. ଛକ ପର୍ଯ୍ୟନ୍ତ ସଚିବାଳୟ ମାର୍ଗରେ ଯାତାୟତ କରିପାରିବ ନାହିଁ । ଏହି ଆଦେଶ ପୌର ପାଳିକାର ସଫେଇ ଗାଡ଼ି, ପି. ଏଚ୍. ଡ଼ି.ର ଜଳ ଯୋଗାଣ ଗାଡ଼ି, ନିଆଁ ଲିଭା ଗାଡ଼ି, ବିଦ୍ୟୁତ୍ ବିଭାଗର ଅତ୍ୟାବଶ୍ୟକୀୟ ଗାଡ଼ିମାନଙ୍କ ପାଇଁ ଲଗୁ ହେବନାହିଁ ।

ଏହା ବ୍ୟତୀତ କଳ୍ପନା ଛକଠାରୁ ରାଜମହଲ ଛକ ପର୍ଯ୍ୟନ୍ତ ଏବଂ ରାଜମହଲ ଛକରୁ ଏ. ଜି. ଛକ ପର୍ଯ୍ୟନ୍ତ ଉଭୟ ପୁରୁଣା ଓ ନୂଆ ରାଜପଥ କୌଣସି ଗାଡ଼ିର ରହଣି ସ୍ଥାନ ରୂପେ ବ୍ୟବହୃତ ହେବନାହିଁ ।

—

## ମାଛ ଖାଇବ ଚିଙ୍ଗୁଡ଼ି

ବିଦେଶକୁ ରପ୍ତାନୀ ଯୋଗୁଁ ବାଗଦା ଚିଙ୍ଗୁଡ଼ି ଉତ୍ପାଦନର ଗୁରୁତ୍ୱ ଓ ବୈଦେଶିକ ମୁଦ୍ରା ଉପାର୍ଜନ ଦୃଷ୍ଟିରୁ ରାଜ୍ୟର ଉପକୂଳ ଜିଲ୍ଲା ଯଥା—କଟକ, ପୁରୀ, ବାଲେଶ୍ୱର, ଓ ଗଞ୍ଜାମର ଜୁଆରିଆ ଅଞ୍ଚଳ ସର୍ଭେ କରାଯାଇ ଚିଙ୍ଗୁଡ଼ି ଚାଷପାଇଁ ପଦକ୍ଷେପ ନିଆଯାଉଛି । ପ୍ରଥମ ପର୍ଯ୍ୟାୟରେ ୧୯୭୮-୭୯ ଆର୍ଥିକ ବର୍ଷଠାରୁ ଲୁଣିପାଣି କ୍ଷେତ୍ର ସର୍ଭେ କାର୍ଯ୍ୟକ୍ରମ ହାତକୁ ନିଆଯାଇ ୧୫,୩୩୦'୫୬ ହେକ୍ଟର କ୍ଷେତ୍ର ଉପଯୁକ୍ତ ବିବେଚିତ ହୋଇଛି ।

ଏଥିପାଇଁ ଆଗ୍ରହୀ ମତ୍ସ୍ୟଚାଷୀମାନଙ୍କୁ ବ୍ୟାଙ୍କ ଋଣ ଓ ବିଭାଗୀୟ ରିହାତି ଆକାରରେ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଉଛି । ପୁରୀ ଓ ଗଞ୍ଜାମ ଜିଲ୍ଲାକୁ ନେଇ ପୁରୀଠାରେ ଏବଂ କଟକ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ବାଲେଶ୍ୱରଠାରେ ଦୁଇଟି ଲୁଣିପାଣି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ପ୍ରତିଷ୍ଠିତ ହୋଇ ୨୪୯ଜଣ ଚିଙ୍ଗୁଡ଼ି ଚାଷୀଙ୍କୁ ଶତକଡା ୨୫ ଭାଗ ହାରରେ ୯ ଲକ୍ଷ ୪୪ ହଜାର ୭୨୪ ଟଙ୍କା ବିଭାଗୀୟ ରିହାତି ଦିଆଯାଇଛି । ଏମାନଙ୍କୁ ୪୨ ଲକ୍ଷ ୧୦ ହଜାର ୨୬୩ ଟଙ୍କା ବ୍ୟାଙ୍କ ଋଣ ମଞ୍ଜୁର କରାଯାଇ ତନ୍ମଧ୍ୟରୁ ୨୭ ଲକ୍ଷ ୪୯ ହଜାର ୪୫୧ ଟଙ୍କା ଦିଆସରିଲଣି । ବର୍ତ୍ତମାନ ଚିଙ୍ଗୁଡ଼ି ଚାଷପାଇଁ ୪୦୫'୩୯ ହେକ୍ଟର ପରିମିତ ଅଞ୍ଚଳରେ ଲୁଣିପାଣି ପୋଖରୀ ମଧ୍ୟ ପ୍ରସ୍ତୁତ ହୋଇସାରିଲାଣି । ଏହା ବ୍ୟତୀତ ରାଜ୍ୟର ଆଗ୍ରହୀ ଚିଙ୍ଗୁଡ଼ି ଚାଷୀମାନଙ୍କର ନିଜସ୍ୱ ଅର୍ଥ ବ୍ୟୟରେ ଗତ ମାର୍ଚ୍ଚ ମାସ ସୁଦ୍ଧା ୧୩୨'୦୩ ହେକ୍ଟର ପୋଖରୀରେ ଚିଙ୍ଗୁଡ଼ି ଚାଷ କରାଯାଇଛି ।

ବିଭାଗୀୟ ଯୋଜନା ଅଧୀନରେ ପୁରୀ ଜିଲ୍ଲାର ମୃତିରଥ ଓ ବାଲେଶ୍ୱର ଜିଲ୍ଲାର ଜୟଦେବ କସବାଠାରେ ଚିଙ୍ଗୁଡ଼ି ଚାଷ ଚାଲିଛି । ଅର୍ଥକାରୀ ଚିଙ୍ଗୁଡ଼ି ଚାଷ ସଂକ୍ରାନ୍ତୀୟ ବୈଷୟିକ ଜ୍ଞାନ କୌଶଳ ଆହରଣ ନିମନ୍ତେ ୬୮୨ଜଣ ଚିଙ୍ଗୁଡ଼ି ଚାଷୀଙ୍କୁ ତାଲିମ ଦିଆଯାଇଛି । ଚିଙ୍ଗୁଡ଼ି ଚାଷର ବିକାଶ ପାଇଁ ଲୁଣିପାଣି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା, ଇ. ଆର. ଆର. ପି. କ୍ଷେତ୍ର ବିକାଶ ଯୋଜନା ଏବଂ ସମନ୍ୱିତ ଗ୍ରାମ୍ୟ ବିକାଶ ଯୋଜନାରୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି ।

—

## ମାଛ ଚାଷ ସମ୍ପର୍କରେ ତାଲିମ

କଳାହାଣ୍ଡି ଜିଲ୍ଲା ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥାର ବାସ୍ତବ କାର୍ଯ୍ୟକାରୀତା ଚଳିତ ବର୍ଷ ମାର୍ଚ୍ଚ ମାସଠାରୁ ଆରମ୍ଭ ହୋଇଛି । ମାର୍ଚ୍ଚ ମାସରେ ପ୍ରଥମେ ଜାତୀୟକରଣ ବ୍ୟାଙ୍କମାନଙ୍କୁ ୧୦୧ଟି ଆବେଦନ ପତ୍ର (କେଶ୍) ବିଭିନ୍ନ ସଂପ୍ରଦାୟ ଲୋକମାନଙ୍କର ନୂଆ ଓ ପୁରୁଣା ପୋଖରୀର ଉନ୍ନତି ପାଇଁ ପଠାଯାଇଥିଲା । ଇତି ମଧ୍ୟରେ ଗତ ଜୁନ୍ ମାସ ଶେଷ ସୁଦ୍ଧା ୨୪୬ଟି କେଶ୍ ୧୦୮'୩୬ ହେକଟର ଆୟତନ ବିଶିଷ୍ଟ ପୋଖରୀରେ ମାଛଚାଷ ପାଇଁ ବ୍ୟାଙ୍କମାନଙ୍କୁ ପଠାଗଲଣି । ବ୍ୟାଙ୍କ୍ କର୍ତ୍ତୃପକ୍ଷ ୭୪ ଟି କେଶ୍ ପାଇଁ ଅର୍ଥ ଜିମ୍ମାଓ୍ୱାରୀରେ ଯୋଗାଇ ଦେଉଛନ୍ତି । ଏହି ଅର୍ଥ ବିନିଯୋଗ ହୋଇ ୧୨'୦୪ ହେକ୍ଟର ଆୟତନ ବିଶିଷ୍ଟ ପୋଖରୀରେ ମିଶ୍ରିତ ମାଛଚାଷ କରାଗଲଣି । ଏବର୍ଷ ଗାଁ ଗହଳିରେ ଉନ୍ନତ ମାଛଚାଷର ବିକାଶ ପାଇଁ ୧୭ ଜଣ ଆଗ୍ରହୀ ଯୁବକଙ୍କୁ ମାଛଚାଷ ବିଷୟରେ ତାଲିମ ଦିଆଗଲଣି । ଏହାଦ୍ୱାରା ସେମାନେ ବୈଷୟିକ ଜ୍ଞାନ କୌଶଳ ଜାଣିବା ସଙ୍ଗେ ସଙ୍ଗେ ଅଧିକ ମାଛ ଉତ୍ପାଦନ କରିବାକୁ ସକ୍ଷମ ହେବେ । ଏହି ସଂସ୍ଥା ତରଫରୁ ଏପର୍ଯ୍ୟନ୍ତ ୩ ଜଣ ମତ୍ସ୍ୟଚାଷୀ ବ୍ୟାଙ୍କ ଜରିଆରେ ୬ ହଜାର ଟଙ୍କା ସବ୍‌ସିଡ଼ି ପାଇଛନ୍ତି । ଚଳିତ ବର୍ଷ ୧୦ ହେକ୍ଟର ଆୟତନ ପରିମିତ ଜଳାଶୟରେ ଲୋକମାନଙ୍କୁ ଆଦର୍ଶ ମାଛଚାଷ ସଂପର୍କରେ ଜଣାଇବାର କାର୍ଯ୍ୟକ୍ରମ ଅଛି । ହେକ୍ଟର ପିଛା ଦୁଇ ହଜାର ଟଙ୍କା ସଂସ୍ଥା ତରଫରୁ ଖର୍ଚ୍ଚ କରାଯାଇ ଏପରି ଉନ୍ନତ ମାଛଚାଷ କୌଶଳ ଜନସାଧାରଣଙ୍କୁ ଦେଖାଇବା ସଂଗେ ସଂଗେ କେତେଗୁଡ଼ିଏ କ୍ଷୁଦ୍ରଚାଷୀ ପୋଖରୀ ମାଲିକ ଉପକୃତ ହେବେ ।

—

## ରାଜ୍ୟରେ ବିମାନ ଚଳାଚଳ

ରାଜ୍ୟ ସରକାରଙ୍କ ଦୁଇଟି ବିମାନ ଅଛି । ଗୋଟିଏ ସୁପରକିଂଗ୍ ଏୟାର ବି—୨୦୦ ଏବଂ ଅନ୍ୟଟି ବ୍ୟାରନ୍—୫୮ । ଏଗୁଡ଼ିକ ସରକାରଙ୍କ ଉଚ୍ଚ ପଦସ୍ଥ ଅଧିକାରୀ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ ବ୍ୟକ୍ତିମାନଙ୍କ ସରକାରୀ ବ୍ୟବହାରରେ ଲାଗେ । ବିଶେଷତଃ ମରୁଡ଼ି ଏବଂ ୨୦—ଦଫା କାର୍ଯ୍ୟକ୍ରମ ସଂକ୍ରାନ୍ତରେ ଏଗୁଡ଼ିକ ଲାଗିଥାଏ ।

ବର୍ତ୍ତମାନ ଅଧିକାଂଶ ଜିଲ୍ଲାରେ ବିମାନ ଘାଟୀ ଅଛି । ବାୟୁଦୂତ ସର୍ଭିସ୍ ବିମାନ ଯେପରି ଜୟପୁର ପର୍ଯ୍ୟନ୍ତ ଯାଇ

ପାରିବ, ସେଥିପାଇଁ ଜୟପୁର ବିମାନଘାଟୀକୁ ଉନ୍ନତ କରାଯାଉଛି । କୋରାପୁଟର ଗୁଣୁପୁର ନିକଟ ଭଡୁଆରେ ଥିବା ବିମାନଘାଟୀକୁ ଉନ୍ନତ କରାଯିବାର ପ୍ରସ୍ତାବ ଅଛି । ନାଲକୋ ପରିକଳ୍ପନା ଯୋଗୁଁ ତାଳଚେର ଅଞ୍ଚଳର ଗୁରୁତ୍ୱ ବୃଦ୍ଧି ପାଇଛି । ତେଣୁ, ତାଳଚେରଠାରେ ଏକ ବିମାନ ଘାଟୀ ନିର୍ମାଣ କରିବାର ଯୋଜନା ଅଛି । ପର୍ଯ୍ୟଟକମାନଙ୍କୁ ସୁବିଧା ପାଇଁ ମୟୂରଭଞ୍ଜର ସିମିଳିପାଳ ଅଞ୍ଚଳରେ ଗୋଟିଏ ହେଲିପ୍ୟାଡ୍ ନିର୍ମାଣ ହେବାକୁ ଅଛି ।

କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାମାନଙ୍କର ବନ୍ୟାକ୍ଲିଷ୍ଟ ଅଞ୍ଚଳରେ ୧୬ଟି ହେଲିପ୍ୟାଡ୍ ନିର୍ମାଣ କରାଯାଉଛି । ଏହି ହେଲିପ୍ୟାଡ୍‌ଗୁଡ଼ିକ ଦ୍ୱାରା ରାଜ୍ୟ ସରକାର ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଅଧିକ ସାହାଯ୍ୟ ଦେଇପାରିବେ ।

ରାଜ୍ୟର ବିମାନ ଚାଳନା କାର୍ଯ୍ୟର ଉନ୍ନତି ସାଧନ ଉଦ୍ଦେଶ୍ୟରେ, ଅର୍ଥାତ୍ ବିମାନ ଚାଳନା ଶିକ୍ଷା ଦେବା ପାଇଁ ଦୁଇଟି ପୁଷ୍ପକ ବିମାନ ସରକାରଙ୍କର ଅଛି । ଆଉଏକ ବିମାନ ଖର୍ଦ୍ଦି କରିବାର ଯୋଜନା ଅଛି । ଭାରତୀୟ ବିମାନ ସଂସ୍ଥାର ବୋଇଂ ବିମାନ ଦିଲ୍ଲୀ ଓ ଭୁବନେଶ୍ୱର ମଧ୍ୟରେ ସପ୍ତାହରେ ଚାରିଦିନ ଯାତାୟତ କରୁଛି । ବିମାନ ଯାତ୍ରୀଙ୍କ ସଂଖ୍ୟା ବୃଦ୍ଧି ପାଇବା ହେତୁ ରାଜ୍ୟ ସରକାର ବିମାନ ଚାଳନା ସଂସ୍ଥାକୁ ଏହି ବିମାନ ଚାଳନା ପ୍ରତିଦିନ କରିବା ପାଇଁ ଅନୁରୋଧ କରିଛନ୍ତି । ନିକଟ ଭବିଷ୍ୟତରେ ଯେପରି ଭୁବନେଶ୍ୱର ବିମାନ ବନ୍ଦରରେ ଏୟାର ବସ୍ ଅବତରଣ କରିପାରିବ, ସେଥିପାଇଁ ଭୁବନେଶ୍ୱର ବିମାନ ବନ୍ଦରକୁ ଉନ୍ନତ କରାଯିବାର ପ୍ରସ୍ତାବ ଅଛି ।

ବାୟୁଦୂତ ସର୍ଭିସ୍ ରାଉରକେଲାକୁ କଲିକତା, ରାଞ୍ଚି ଓ ପାଟନା ସହ ସଂଯୋଗ କରୁଛି । ଭୁବନେଶ୍ୱର ଜୟପୁର ଦେଇ ବିଶାଖାପାଟଣାକୁ ଏବଂ ଭୁବନେଶ୍ୱରରୁ ଝାରସୁଗୁଡ଼ା ଦେଇ ରାୟପୁର (ମଧ୍ୟପ୍ରଦେଶ)କୁ ବାୟୁଦୂତ ବିମାନ ଚଳାଇବା ପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଛି ।

—

## ପ୍ରୌଢ଼ଙ୍କୁ ଶିକ୍ଷାଦାନ

ଗ୍ରାମ୍ୟ ବୃତ୍ତିଭିତ୍ତିକ ସ୍ୱାକ୍ଷରତା ଯୋଜନା ଅନୁଯାୟୀ କେନ୍ଦ୍ର ଓ ରାଜ୍ୟ ସରକାର ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଉଦ୍ୟମରେ ଗତବର୍ଷ ୭,୪୯୫ଟି ପ୍ରୌଢ଼ଶିକ୍ଷା କେନ୍ଦ୍ର ଜରିଆରେ ୨ ଲକ୍ଷ ୩୦ ହଜାର ୨୬୩ ଜଣ ପ୍ରୌଢ଼ ସ୍ୱାକ୍ଷର ହୋଇପାରିଛନ୍ତି ।

୧୯୮୪-୮୫ରେ କେନ୍ଦ୍ର ସରକାରଙ୍କ ସହାୟତାରେ ରାଜ୍ୟରେ ଅଧିକ ୬ଟି ପ୍ରୌଢ଼ଶିକ୍ଷା ଯୋଜନା ଖୋଲିବାକୁ ଅର୍ଥ ଯୋଗାଇ ଦିଆଯାଇଥିଲା । ଏହି ଯୋଜନାଗୁଡ଼ିକ ଫୁଲବାଣୀ ଜିଲ୍ଲାର ବାଲିଗୁଡ଼ା, କଳାହାଣ୍ଡି ଜିଲ୍ଲାର ଧରମଗଡ଼, ବଲାଙ୍ଗୀର ଜିଲ୍ଲାର ଟିଟିଲାଗଡ଼, କେନ୍ଦୁଝର ଜିଲ୍ଲାର ଚଂପୁଆ, ମୟୂରଭଞ୍ଜ ଜିଲ୍ଲାର ରାଇରଙ୍ଗପୁର ଓ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିଠାରେ ଖୋଲାଯାଇଛି । କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟ କରୁଥିବା ୫,୭୦୦ଟି କେନ୍ଦ୍ରରେ ୧ଲକ୍ଷ ୭୬ ହଜାର ୩୨୩ ଜଣ ନିରକ୍ଷର ପ୍ରୌଢ଼ଙ୍କୁ ଶିକ୍ଷା ଦିଆଯାଉଛି । ଏଥିମଧ୍ୟରୁ ମହିଳାଙ୍କ ସଂଖ୍ୟା ୭୨,୪୯୮ । ବହୁଳ ସଂଖ୍ୟାରେ ଆଦିବାସୀ ଓ ହରିଜନଙ୍କ ଶିକ୍ଷା କେନ୍ଦ୍ରରେ ଯୋଗଦାନ ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ଏହି ଉଭୟ ଶ୍ରେଣୀର ପୁରୁଷଙ୍କ ସଂଖ୍ୟା ୬୮,୧୯୪ ଓ ମହିଳାଙ୍କ ସଂଖ୍ୟା ୫୧,୬୩୨ ।

ଗତବର୍ଷ ରାଜ୍ୟ ଯୋଜନା ଅର୍ଥ ବିନିଯୋଗରେ ୧ ହଜାରଟି କେନ୍ଦ୍ର ଖୋଲାଯାଇଛି । ଏଥିମଧ୍ୟରେ ୨ଟି ନୂତନ ପ୍ରୋଜେକ୍ଟ କଟକ ଜିଲ୍ଲାର ଯାଜପୁର ଓ କୋରାପୁଟ ଜିଲ୍ଲାର ରାୟଗଡ଼ାଠାରେ ଖୋଲାଯାଇଛି । ପ୍ରତ୍ୟେକ ପ୍ରୋଜେକ୍ଟରେ ୨୦୦ଟି ଲେଖାଏଁ କେନ୍ଦ୍ର ଅଛି । ଅବଶିଷ୍ଟ ୧୧ଟି ଜିଲ୍ଲାରୁ ଫୁଲବାଣୀ, କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ ୪୦ଟି ଲେଖାଏଁ ଓ ଅନ୍ୟ ଜିଲ୍ଲାମାନଙ୍କରେ ୬୦ଟି ଲେଖାଏ କେନ୍ଦ୍ର ଖୋଲାଯାଇଛି । ଏହିସବୁ କେନ୍ଦ୍ର ମାଧ୍ୟମରେ ୩୦,୦୯୦ ଜଣ ପ୍ରୌଢ଼ ଗତବର୍ଷ ଶିକ୍ଷା ପାଉଛନ୍ତି । ଏଥିମଧ୍ୟରୁ ମହିଳାଙ୍କ ସଂଖ୍ୟା ୧୨,୨୪୦ ଓ ଏବଂ ଆଦିବାସୀ ଓ ହରିଜନ ସଂପ୍ରଦାୟର ପୁରୁଷଙ୍କ ସଂଖ୍ୟା ୮,୨୮୭ ଓ ମହିଳାଙ୍କ ସଂଖ୍ୟା ୬,୧୧୪ ।

ଏସବୁ ବ୍ୟତୀତ ରାଜ୍ୟର କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସରକାରୀ ସହାୟତାରେ ଗତବର୍ଷ ୫୯୫ଟି କେନ୍ଦ୍ରରେ ୨୩,୮୫୦ ଜଣ ପ୍ରୌଢ଼ଙ୍କୁ ଶିକ୍ଷା ଦେଇଥିଲେ । ରାଜ୍ୟର ବିଶ୍ୱବିଦ୍ୟାଳୟଗୁଡ଼ିକରେ ଜାତୀୟ ସେବାସଂସ୍ଥା ଜରିଆରେ ମଧ୍ୟ ପ୍ରୌଢ଼ଙ୍କୁ ଶିକ୍ଷାଦାନ କାର୍ଯ୍ୟକ୍ରମ କରାଯାଉଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ରାଜ୍ୟରେ ମହିଳାଙ୍କ ପ୍ରୌଢ଼ ଶିକ୍ଷା କେନ୍ଦ୍ରରେ ଅଧିକ ଯୋଗଦାନ ପାଇଁ ୧୯୮୪-୮୫ରେ ରାଜ୍ୟ ସରକାର ଏକ ଜାତୀୟ ପୁରସ୍କାର ପାଇପାରିଛନ୍ତି ।

—



ଆମର ସଂକଳ୍ପ—ବେକାରୀ ଓ ଦାରିଦ୍ର୍ୟର ଦୂରୀକରଣ ଓ ଦୁର୍ବଳ ଶ୍ରେଣୀମାନଙ୍କର ସୁରକ୍ଷା, ଶାସନରେ ଗରିବ ଲୋକମାନଙ୍କୁ ନ୍ୟାୟ ଦେବା, ଏହାକୁ ଅଧିକ ଦକ୍ଷ, ଜନ କଲ୍ୟାଣକର କରି ଦୁର୍ନୀତିମୁକ୍ତ କରିବା । ଶାସନର ପ୍ରତି ପଦକ୍ଷେପରେ ଜନମତକୁ ସମ୍ମାନ ଦେବା ପାଇଁ ମୁଁ ପୁଣି ପ୍ରତିଶ୍ରୁତି ଦେଉଛି ।

# ବାବା-ବାପା

**ଶ୍ରୀ ଅନ୍ନଦା ଚରଣ ଦାସ**

ପ୍ରାୟ ଅର୍ଦ୍ଧଶତାବ୍ଦୀ ତଳର କଥା । ଓଡ଼ିଶାର ତତ୍‌କାଳୀନ ରାଜଧାନୀ କଟକ ସହରର ସ୍ୱଦନୀଚୌକ ନିକଟସ୍ଥ ଡଗରପଡ଼ାର ପ୍ରଥମ ଗଳିରାସ୍ତା । । ବାସଲେନ୍! ତା'ରି ଭିତରେ ପ୍ରଥମ ଦୋତାଲା କୋଠା । ଗେଟ୍ ଉପରେ ବିରାଟ ଘଞ୍ଚ ମଧୁମାଳତୀଲଟା । ଗେଟ୍‌ର ଦୁଇପାଖରେ ଦୁଇଟି ମାର୍ବଲ ଫଳକରେ ଲେଖା । ଏକପାଖରେ ଧଳାମାର୍ବଲ ଫଳକ ଉପରେ ଲେଖାହେଇଟି B. N. DAS, VAKIL ଆଉ ଆରପାଖରେ କଳା ମାର୍ବଲ ଉପରେ ଲେଖାଅଛି B. DAS ଓ ତାତଳକୁ ବିଲତଫେରନ୍ତା ଡିଗ୍ରୀଗୁଡ଼ିକ (AMICE, AMIEE Glas) ତଳକୁ ଲେଖାଯାଇଟି Consulting Engineer.

ଏଇ ଦୁଇଟି ଓଡ଼ିଶା ତଥା ସାରା ଭାରତର ଗୌରବମୟ ନାମ । ଓଡ଼ିଶାର ଚିର ସ୍ମରଣୀୟ ନାମ, ଚିର ନମସ୍ୟ ବ୍ୟକ୍ତିତ୍ୱ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଭୁବନାନନ୍ଦ ଦାସ–ମୋର 'ବାବା' ଓ 'ବାପା' ! ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ବିଶ୍ୱ ପ୍ରସିଦ୍ଧ ଅହିଂସା ସ୍ୱାଧୀନତା ସଂଗ୍ରାମର ଦୁଇ ରଥୀ ବିଚିତ୍ରାନନ୍ଦ ଓ ଭୁବନାନନ୍ଦ । ଆଦର୍ଶ-ଚରିତ୍ର, ଅନାବିଳ ଦେଶପ୍ରୀତି, ଅଦ୍ଭୁତ ସ୍ୱାର୍ଥତ୍ୟାଗ ଓ ଅଶ୍ରୁତପୂର୍ବ ସାହସର ମୂର୍ତ୍ତିମନ୍ତ ପ୍ରତୀକ ସେ ଦୁହେଁ । 'ବାବା' ବିଚିତ୍ରାନନ୍ଦ ଦାସ ଓ ବାପା ଭୁବନାନନ୍ଦ ଦାସ, 'ବାବା' କୁଶବାବୁ, 'ବାପା' ଲବବାବୁ । ସେମାନେ ଥିଲେ ଯମଜ ଭ୍ରାତ୍ରା, ସତେ ଯେପରି ବିଧାତା ଏ ଦୁଇଟି ମନୁଷ୍ୟଙ୍କୁ ଗୋଟିଏ ଉପାଦାନରେ ଗଢ଼ିଦେଇଥିଲେ । ଗୋଟିଏ ବୃନ୍ତରେ ଦୁଇଟି ପୁଷ୍ପ । ଗୋଟିଏ ଆକାଶରେ ଦୁଇଟି ଜାତୀୟ ଜ୍ୟୋତିଷ୍କ ! 'ବାବା' ... 'ବାପା' ।

'ସମାଜ'ରୁ ସେଦିନ ପଢ଼ିଲି ଯେ "ବିଚିତ୍ରାନନ୍ଦ ଓ ଭୁବନାନ... ସ୍ମରଣିକା" ଟି ପ୍ରକାଶ ପାଇବ ତାଙ୍କର ଶତବାର୍ଷିକ ଉତ୍ସବରେ ... ଯେଉଁମାନେ ଏହି ଦୁଇଜଣଙ୍କ ସହ ସଂପୃକ୍ତ ଥିବେ ... ସେମାନଙ୍କ ବିଷୟରେ ଯତ୍‌କିଂଚିତ ଜାଣନ୍ତି ସେ ବିଷୟରେ ... ଲେଖା ପଠାଇବାପାଇଁ କର୍ମକର୍ତ୍ତାମାନେ ନିବେଦନ କରିଛ... ହଠାତ୍ ମୋର ମନ ଚହଲିଗଲା । ଚଳଚିତ୍ର ଭଳି ସ୍ମୃତି... ମୋର ମାନସପଟରେ ସେଇ ଅର୍ଦ୍ଧଶତାବ୍ଦୀ ତଳର କେତେ ସ୍ମୃ... ଉଙ୍କିମାରି ଆସିଲା । ଭାବିଲି ସେଥିରୁ କିଛି ନଲେଖିଲେ ମୋ... କର୍ତ୍ତବ୍ୟରେ ଅବହେଳା ହେବ । ମୁଁ ଐତିହାସିକ ନୁହେଁ ... ଲେଖକ ନୁହେଁ । ମୋର ଛୋଟ ବୁଦ୍ଧିରେ ଯାହାକିଛି ଅଠା... ସ୍ମୃତି ମନେପଡୁଛି ତାହା ଏଠି ଠିକେଠିକେ ସୁସ୍ଥର ଦେଉଛି ।

ସେଇ ଡଗରପଡ଼ାରେ 'ବାବା' (ବିଚିତ୍ରାନନ୍ଦ)ଙ୍କ ଘ... ସାମନାରେ ମୋର ଅଜାଙ୍କର ଘର । ରାଜକିଶୋର ଦାସ (ଓରଫ ମହାନ୍ତି) ମୋର ଅଜା । ମଧୁ ବାରିଷ୍ଟରଙ୍କ ପି. ଏ. (ଷ୍ଟେନୋ) ରାଜକିଶୋର ଦାସ । ଦେଶକାରର ପ୍ରଖ୍ୟାତ କରଣ ରାଜକିଶୋର ମହାନ୍ତି । ମୋର ଜନ୍ମ କଟକ ଝାଞ୍ଜ... ଗଳିରେ କିନ୍ତୁ ଅଧିକାଂଶ ସମୟରେ ମାମୁଁ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଓ ଅଜା ରାଜକିଶୋରଙ୍କ ଘରେ କଟେ । 'ବାବା' ଓ 'ବାପା' ମୋର ଅଜାଙ୍କୁ ଏକ ସ୍ୱତନ୍ତ୍ର ସମ୍ମାନ ଦିଅନ୍ତି ଓ ତାଙ୍କ ପରିବାରବର୍ଗଙ୍କ ସହ ଅତିଶୟ ଆତ୍ମୀୟତା ବନ୍ଧନରେ ବାନ୍ଧି ହୋଇଥାନ୍ତି ।

'ବାପା' (ଲବବାବୁ)ଙ୍କର ତିନି ପୁଅ ଚାରି ଝିଅ । ଚିରଞ୍ଜୀ... (ବାବୁ ଭାଇ) ମତିରଞ୍ଜନ (ଆବୁ), ଉତ୍କଳ ରଞ୍ଜନ (ଅଞ୍ଜୁ), କମଳା (ଗୌରୀ ଅପା) କୁମାରୀ (କୁମ ଅପା) ପ୍ରମିଳା (ପାପୁ) ଓ ସରଳା (କୁନି) । ସେମାନଙ୍କ ସହିତ ମୁଁ ମଧ୍ୟ ମିଶି ଯାଉଥାଏ । ଗୌରୀ ଅପା ଆମ ସବୁପିଲାଙ୍କ ମଧ୍ୟରେ ବଡ଼ । ଭାରି ସ୍ନେହୀ, ସବୁପିଲାଙ୍କୁ ଭାରି ଶ୍ରଦ୍ଧା କରନ୍ତି । ମମତାର ଗୋଟିଏ ଡୋରରେ ସମସ୍ତଙ୍କୁ ବାନ୍ଧିରଖିଥାନ୍ତି । ଏଣୁ 'ବାବା' ଓ ବାପା' ତାଙ୍କ ସମସ୍ତଙ୍କର । ସଭିଙ୍କର ସେ 'ବାବା' ଓ 'ବାପା' । ମୁଁ ବି ଡାକିଆସିଛି ପିଲାଦିନୁ ସେ ଦୁଇ ମହାପୁରୁଷଙ୍କୁ 'ବାବା' ଓ 'ବାପା' । ବାବାଙ୍କ ବିବାହିତା କନ୍ୟା ଲାବଣ୍ୟ ଅପା । ତାଙ୍କର କି କହିଁ କଥ', କି ଆଦର ଆମମାନଙ୍କୁ ସର୍ବୋପରି 'ବୋଉ' (ଭୁବନାନନ୍ଦଙ୍କ ସହଧର୍ମିଣୀ ରୁକ୍ମିଣୀ ଦେବୀ) ସାକ୍ଷାତ୍ ମୋର ମା ଭଳି । ତାଙ୍କର କଥାବାର୍ତ୍ତା ଓ ବ୍ୟବହାରରେ ଆମ ସମସ୍ତଙ୍କୁ ବାନ୍ଧି ରଖିଥାନ୍ତି । ସେ କି ଶ୍ରଦ୍ଧା ! କଦାପି ଭୁଲିବାର ନୁହେଁ ।

ଓପରଓଳି ହେଲେ ସେଘରେ ସବୁପିଲାଏ ଏକାଠି ହୋଇ ଖେଳିବୁ । ଖେଳିବାପୂର୍ବରୁ କିଛି କିଛି ଜଳଖିଆ ବୋଉ ପଠାଉଥିବେ । 'ବାପା' ନିଜେ ଦିଲ୍ଲୀରୁ ଆଣିଥିବା ବିସ୍କୁଟ ଓ ଟଫିମାନ ଆମ ହାତରେ ଦେବେ । ଛାତ ଉପରେ ବସି ଆମେ ସବୁପିଲେ ... ରୁମାଲ ଚୋରୀ ଖେଳିବୁ । Lexicon ଖେଳିବୁ । ଅନ୍ତାକ୍ଷରୀ ... କରିବୁ ଇତ୍ୟାଦି ଇତ୍ୟାଦି । ସେ ଅଦୂରରେ ଏକ ଚୌକିରେ ବସି ଆମର ଶିଶୁ ଚପଳ୍ୟଭରା ଖେଳକୌତୁକ ଦେଖି ବି ଖୁସି ହୁଅନ୍ତି । ବିଶ୍ୱସ୍ତ ଭୃତ୍ୟ ଉଦ୍ଧବ ମଥାରେ ତେଲ ଘଷୁଥାଏ ।

'ବାବା' ଚନ୍ଦ୍ରମାହାଲରେ ରହନ୍ତି । ସକାଳ ୯ଟା ଅତିଥିଙ୍କର ଜଳଖିଆ ହୁଏ । ସକାଳୁ ମାଣ୍ଡିଆ ଚାଉ, ଚୁଡ଼ାଭଜା, ପୁରି ଇତ୍ୟାଦି ଦେଶୀୟ ପ୍ରାତଃଭୋଜନ ତଳ ଶୋଇବାଘର ବାରଣ୍ଡାରେ ପରିବେଷଣ କରାଯାଏ । ସେ ବାରଣ୍ଡାରେ ଲାଗିକୋଠିରେ ଏକ ବଡ଼ ଟିକଝୋଲର ଓହଳିଥାଏ । ଅଳ୍ପ କେତେଖଣ୍ଡ ଚୌକି ଓ ଟି ପୟଟିଏ ଥାଏ । ତା ଉପରେ ଆସି ପ୍ରାୟ ଦେଶୀ ଜଳଖିଆ । ସକାଳ ପ୍ରାୟ ସାତଟାରେ 'ବାବା' ଜଳଖିଆ ଖାଆନ୍ତି । ସେଇ ଆସରକୁ ଆସନ୍ତି ଆମ ପିଲାମାନଙ୍କ ଛଡ଼ା ପାଠକଜୀ (ପଣ୍ଡିତ.ଅନସୂୟା ପ୍ରସାଦ ପାଠକ) । ଶାହିର ପୁରୁଣା ବୟସ ବ୍ୟକ୍ତି ଶ୍ରୀ ଲକ୍ଷ୍ମଣ ସ୍ୱାଇଁ, କଦାଚିତ୍ ଦେବେନ୍ଦ୍ର ଚୌଧୁରୀ, ଶୀତାଂଶୁ ବିଦ୍ୟାଧର ବର୍ମା ଓ ଆଉ ସରକାରୀ ଓ ବେସରକାରୀ ଲୋକ ପ୍ରତିଦିନ । ଆଉ ଆମେ କେତେଜଣ ପିଲା ବି ଥାଉ । 'ବାବା' ସମସ୍ତଙ୍କ ସଙ୍ଗେ ବସି ଏକତ୍ର ସେଇ ଜଳଖିଆ ଖାଇବାକୁ ଓ କଥାବାର୍ତ୍ତା ହେବାକୁ ଭାରି ଭଲପାନ୍ତି । ମନରେ କି ଆନନ୍ଦ ! କି ତୃପ୍ତି !! କି ସରାଗ !!!

ଆଜି ମନେପଡୁଛି 'ବାବା" ଓ ବାପା" ମତେ ଡାକୁଥିଲେ 'ବୁଗ୍' ଟିକଭାଇ ହେରିକା କେତେବେଳେ କେମିତି, ପରିହାସରେ ଡାକି ଦେଉଥିଲେ 'ବୁଗୁଖାଁ' । ମୋର ଡାକ ନାମଥିଲା ବୁଚି । କିନ୍ତୁ 'ବାବା'ଙ୍କ ଘରେ ମୋର ଡାକନାମ 'ବୁଗ୍' । ମୁଁ ମଧ୍ୟ ତାଙ୍କର ସେ ପ୍ରକାରର ସମ୍ବୋଧନରେ ଟିକିଏ ହସିଦେଇ ମୌନ ସମ୍ମତି ଜଣାଏ ।

ଅଧିକାଂଶ ଛୁଟିଦିନ ବା ରବିବାର ଦିନଗୁଡ଼ିକରେ ସେ ଘରେ ବହୁ ଗହଳି ଟିକେ ବେଶୀ ହୁଏ । ଆମ ସାଙ୍ଗରେ ମିଶିବାକୁ ଆସନ୍ତି ମୁରଲୀଭାଇ, ଜଗା ମାମୁଁ (ଶ୍ରୀ ଜଗମୋହନ ପଟ୍ଟନାୟକ), ବନ୍ଧୁଭାଇ, ଟିକଭାଇ (ଜଗବନ୍ଧୁ ଦାସ), ଜୁନିଆଭାଇ ପ୍ରଭୃତି ବୟୋଜ୍ୟେଷ୍ଠ ଆତ୍ମୀୟମାନେ । ଆମକୁ ସବୁ ଶ୍ରଦ୍ଧା କରନ୍ତି, କେତେ ଭଲଭଲ ଉପଦେଶମାନ ଦିଅନ୍ତି, ଭଲଭଲ ଗପବହି ପଢ଼ିବାକୁ ଦିଅନ୍ତି ଇତ୍ୟାଦି ଇତ୍ୟାଦି । ଦେବଅପା (ଦେବହୁତି ଦେଈ)ଙ୍କୁ ଆମେ ଜଣେ ବିଶିଷ୍ଟ ନାରୀକବି ଭାବରେ ସ୍ୱତନ୍ତ୍ର ସମ୍ମାନ ଦେଉ ।

ସେ ପରିବାରର କେତେ ଯେ ସ୍ମୃତି ମୋର ମନରେ ଅଛି, ସବୁ ଲେଖିଲେ ଖଣ୍ଡେ ପୋଥି ହେବ କି କଣ ! ଦିନକର ଗୋଟିଏ ଛୋଟ ମଜାଘଟଣା ମନେ ପଡୁଛି । ସେ ସାହିର ବୟୋବୃଦ୍ଧ ବ୍ୟକ୍ତି ଲକ୍ଷ୍ମଣ ସ୍ୱାଇଁ (ଜଣେ ବୟସ୍କ କାଉନ୍‌ସିଲର) ଆସନ୍ତି । ବାବାଙ୍କର ଜଳଖିଆ ଟେବୁଲରେ ପଡ଼ିଥିବା ବିଭିନ୍ନ ପତ୍ରପତ୍ରିକା ଓ ଦୈନିକ ଖବରକାଗଜ ପଢ଼ିବାକୁ । କିନ୍ତୁ 'ସମାଜ' ପଢ଼ିବାକୁ ସେ ସବୁଠୁ ବେଶୀ ଆଗ୍ରହୀ । କିନ୍ତୁ ତାଙ୍କର ସେ 'ସମାଜ' ପଢ଼ା କଣ ଏମିତି ସେମିତି ? ପୁରା ପ୍ରଥମ ପୃଷ୍ଠା 'ସମାଜ' ପ୍ରତିଷ୍ଠାତା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ଆରମ୍ଭକରି ସବା ଶେଷ ପୃଷ୍ଠା ଶେଷ ଧାଡ଼ି ମୁଦ୍ରାକର ଓ ସଂପାଦକ ଶ୍ରୀ ଲିଙ୍ଗରାଜ ମିଶ୍ର ପର୍ଯ୍ୟନ୍ତ । ଧଳା ନିଶୁଆନାମକ ଉପରେ ମୋଟା ପୁରୁଣାକାଳିଆ ଚଷମାଟାଏ ପିନ୍ଧି କାଗଜଖଣ୍ଡିକ ଉପରେ ଆଖି ମାଡ଼ିଦେଇ ପଢ଼ା ଆରମ୍ଭ କରିବେ ଯେ ପୁରା ଦିଘଣ୍ଟା ମୁଦ୍ରକ ଶେଷ ଅକ୍ଷର ପର୍ଯ୍ୟନ୍ତ । ଥରେ ମୁଁ ପରୀକ୍ଷାଫଳ ଟିକେ ଦେଖିବାକୁ ତାଙ୍କ ପାଖରେ ଠିଆହୋଇଥାଏ । ପିଲାଲୋକ ତାଙ୍କୁ କିଛି କହିପାରୁ ନଥାଏ କି କାଗଜଟା ମାଗିପାରୁ ନଥାଏ । କିନ୍ତୁ ତାଙ୍କ ଆଖିରେ ପଡ଼ିଲାପରି ଠିଆହୋଇ ରହିଥାଏ । ଲକ୍ଷ୍ମଣ ସ୍ୱାଇଁ ମଧ୍ୟ କାଗଜଟିକୁ ଛାଡୁ ନଥାନ୍ତି । ପୁରା ଦିପଟୁ ହିହାତରେ ମଠାଇଧରି ଗୋଲ ଚଷମାଯୋଡ଼ା ଆଖି ଦିଟାକୁ ମାଡ଼ିଦେଇ ମନମୁନ ବଉଦନଦେଇ କାଗଜ ପଢୁଥାନ୍ତି, 'ବାବା' ହଠାତ୍ କଣ ପାଇଁ ବାରଣ୍ଡାକୁ ଆସିଲେ । ମୁଁ ନମସ୍କାର କଲି । କହିଲେ "କଣ କି ବୁଗ୍" ? ମୁଁ ଟିକିଏ ଶଙ୍କିତହୋଇ କହିଲି "ଟିକିଏ ପରୀକ୍ଷାଫଳ ଦେଖନ୍ତି" "ସେ କହିଲେ ହଉ ଦେଖ୍" କହି ଭିତରକୁ ଚାଲିଗଲେ । କିଛି ସମୟପରେ ପୁଣ ବାରଣ୍ଡାକୁ ଆସିଲେ । ଦେଖିଲେ ମୁଁ ସେଇପରି ଲକ୍ଷ୍ମଣ ସ୍ୱାଇଁଙ୍କ ପାଖରେ ଏମିତି ଅତି ଭଦ୍ରତା ସହକାରେ ଠିଆହୋଇ ଅପେକ୍ଷା କରିଛି ଟିକିଏ ପରୀକ୍ଷାଫଳ ଦେଖିବି ବୋଲି । କିନ୍ତୁ ତାଙ୍କର ଭୋଗ ସରୁଛି ନା ମୁଁ ଦେଖୁଛି ! ସେ ଅବଚଳିତ । ଛିଦିକଲା ଭଳିଆ କାଗଜକୁ ମୁଠେଇ ଧରିଛନ୍ତି । 'ବାବା' ମତେ ପଣି ପଚାରିଲେ—"କଣହେଲା ? ଦେଖିଲୁ ନାହିଁ କି ?" ମୁଁ ଅପ୍ରତିଭ ହୋଇ କହିଲି "ନା, ସେ ପଢୁଛନ୍ତି......" ବାବା ବୋଧହୁଏ ବିରକ୍ତ ହୋଇଗଲେ, କହିଲେ "ସ୍ୱାଇଁବାବୁ, ଆପଣ ତାକୁ ଟିକିଏ କାଗଜଟା ଦିଅନ୍ତୁ, ସେ ଟିକିଏ ତା'ର ପରୀକ୍ଷା ଫଳ ଦେଖି ଚାଲିଯିବ", ସେଇଠୁ ସ୍ୱାଇଁଙ୍କ ଧ୍ୟାନ ଭାଙ୍ଗିଲା । ସେ କାଗଜଟି ଦେଲେ ଓ ମୁଁ ପଢ଼ି ଦେଖିଲି ମୋର ନାଁ ବାହାରିଚି ।

ଆଉ ଦିନକର କଥା । ରେଭେନ୍‌ସା କଲେଜରେ ପଢ଼ିବା ନିମନ୍ତେ ମୁଁ ସବୁ ବ୍ୟବସ୍ଥା କରି ସାରିଥାଏ । ମୋର ପିତାଙ୍କର ପରଲୋକ ହେବାପରେ ଆମର ଆର୍ଥିକ ଅବସ୍ଥା ଭଲ ନଥାଏ । ଡଗରପଡ଼ାରୁ ରେଭେନ୍‌ସା କଲେଜ ଯିବାଟା ଭାରି ଅସୁବିଧା ହେଉଥାଏ । ତଥାପି କେତେଦିନ କଷ୍ଟରେ ଯିବା ଆସିବା କଲାପରେ ଅତି ଅସୁବିଧା ହେବାରୁ ସାଇକେଲ-ଟିଏ କିଣିବାକୁ ଯତ୍ନକଲି । ସେଦିନ ସକାଳେ ତଳ ବାରଣ୍ଡାରେ ବସି ଖବରକାଗଜ ପଢୁଛି । ଅତିଥିମାନେ କେହି ଆସି-ନାହାନ୍ତି । ବାବା ହଠାତ୍ ବାହାରି ଆସିଲେ । କଣ ତାଙ୍କର ମନ ହେଲା କେଜାଣି ମତେ ପଚାରିଲେ "କିରେ ଏମିତି ଶୁଖିଲା ଦିଶୁଚୁ କାହିଁକି ? ଖାଇନୁ କି ?" ମୁଁ ଲାଜେଇଗଲି । ପୁଣି ପଚାରିଲେ । ମନ ଆବେଗରେ କହି ପକାଇଲି- "କଲେଜ ଯିବାକୁ ଅସୁବିଧା ହେବାରୁ ସାଇକେଲଟିଏ କିଣିବାକୁ ଯୋଗାଡ଼ କରିଛି । ପନ୍ଦରଟି ଟଙ୍କା ନିଅଣ୍ଟ ପଡୁଛି—...." ଏକା ନିଃଶ୍ୱାସରେ ଏତକ ଡରି ଡରି କହି ପକାଇ ମୋର ମୁହଁ ଲାଲ ପଡ଼ିଗଲା । ତାଙ୍କ ମୁହଁରେ ଭାବାନ୍ତର ଲକ୍ଷ୍ୟ କଲି । ସେ ସଙ୍ଗେ ସଙ୍ଗେ ଭିତରକୁ ଯାଇ ପନ୍ଦର ଟଙ୍କା ଆଣି ମୋ ହାତରେ ଦେଲେ ଓ ପିଠି ଆପୁଡ଼େଇ ଦେଇ କହିଲେ "ଆଜି ଯାଇ ସାଇକେଲଟି କିଣିନେବ, ଯାଃ" । ଭାତହାଣ୍ଡିରୁ ଗୋଟିଏ ଟିପିଲାପରି ମୁଁ ସେଇଠି ସେଇଦିନ ପାଇଥିଲି ବାବାଙ୍କର ମୋ ପ୍ରତି ଶ୍ରଦ୍ଧା ବିଷୟରେ ।

ତା ଛଡ଼ା ବାବାଙ୍କର କେତେ ଦାନ ଧର୍ମ ମୁଁ ଦେଖିଚି; ପ୍ରତି ରବିବାର ଦିନ ଭିକାରୀ ଦୁଃଖୀ ରଙ୍କୀଙ୍କର ସେ ଦୁଆରେ ପ୍ରବଳ ଭିଡ଼ ହୁଏ । ବାବାଙ୍କର ନିର୍ଦ୍ଦେଶ ସମସ୍ତଙ୍କୁ ସାହାଯ୍ୟ ଦିଆଯିବ । କେହି ଖାଲି ହାତରେ ଫେରିବେ ନାହିଁ । ଦୁଆରୁ ସେ ଗହଳି କୋଳାହଳ ମଧ୍ୟରେ ଗୈରିକ ବସନା 'ବାବା' ସ୍ୱାମୀଜୀଙ୍କର ସେ ଦାନୀ ବେଶ ଯେ ଦେଖିଛି ସେ କେବେ ଭୁଲି ପାରିବ ନାହିଁ । ଦୟା ଓ କରୁଣାର ଅବତାର ସ୍ୱାମୀ

ଚିତ୍ରାନନ୍ଦ ! ଏହାବ୍ୟତୀତ କେତେ ଗରିବ ମେଧାବୀ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ସହାନୁଭୂତି, ପୁସ୍ତକ ସାହାଯ୍ୟ ଇତ୍ୟାଦି ସେ ଦେବାର ମୁଁ ଦେଖିଛି ତା'ର କଳନା ନାହିଁ ।

କଳାବିତ୍, କଳାର ପୂଜାରୀ ଓ ଦୁଃସ୍ଥ କଳାକାରମାନଙ୍କ ପ୍ରତି ମଧ୍ୟ ସେ ଦୁଇ ଭାଇଙ୍କର ସାହାଯ୍ୟ ସହାନୁଭୂତିର ହସ୍ତ ସର୍ବଦା ପ୍ରସାରିତ ହୋଇଥାଏ । ଛୋଟବଡ଼ ବହୁ କଳାକାର ଶିଳ୍ପୀ ବାବା ଓ ବାପାଙ୍କର ସାନ୍ନିଧ୍ୟ, ସାହାଯ୍ୟ ଓ ସହାନୁଭୂତି ପାଇ ଜୀବନରେ ଉନ୍ନତି କରିଛନ୍ତି । ଆଜି ମନେ ପଡ଼ିଯାଉଛି ସେ କାଳର କଥା । ଓଡ଼ିଶାର ବିଶିଷ୍ଟ କଳାଗୁରୁ ଶିଳ୍ପୀ ଶ୍ରୀ ବିଦ୍ୟାଧର ବର୍ମା (ବି: ବର୍ମା) ସେତେବେଳେ ପ୍ରାୟ ଅଧିକାଂଶ ଦିନ ସକାଳେ ବାବା (ଚିତ୍ରାନନ୍ଦ)ଙ୍କୁ ପାଖକୁ ଆସୁଥାନ୍ତି । ସ୍ୱ ଜଳଖିଆ ଖାନ୍ତି । ଉଭୟଙ୍କ ମଧ୍ୟରେ ନାନା କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା ହୁଏ । ବିଦ୍ୟାଧର ବାବୁଙ୍କୁ ବାବା ବହୁତ ସାହାଯ୍ୟ କରିଛନ୍ତି । ଶିଳ୍ପୀଙ୍କର ସୁନ୍ଦର ଚେହେରା, ଧୋତି ପଞ୍ଜାବୀ, ମୁଣ୍ଡରେ କୁଞ୍ଚ କୁଞ୍ଚିଆ ବାଳ ତଳେ ଆଖିରେ ସୁନେଲି ଚଶମା । ଖଣ୍ଡିଏ ରିକ୍ସାରେ ଆସନ୍ତି ଓ ଯାଆନ୍ତି । ମୋର କଳାପ୍ରାଣତା ଦେଖି କି କଣ ମୋତେ ଭଲ ପାନ୍ତି ଓ ମୋତେ କଳାର ଚର୍ଚ୍ଚା କରିବାକୁ, ଛବି ଆଙ୍କିବାକୁ ବହୁତ ପ୍ରେରଣା ଦିଅନ୍ତି । ଉତ୍ସାହିତ କରନ୍ତି ମୋର ସିନେରୀ ଡ୍ରଇଁ ଭାରି ଭଲ ହେଉଥାଏ । ବାବା କହନ୍ତି "ବିଦ୍ୟାଧରବାବୁ, ଯାର ହାତ ଭଲ ଅଛି ଯାକୁ ଆପଣ ଟିକେ ବତାଇ ଦିଅନ୍ତୁ...."

'ବାପା' (ଭୁବନାନନ୍ଦ)ଙ୍କ କଳାପ୍ରାଣତାର ନିଦର୍ଶନ ମଧ୍ୟ ମୁଁ ଦେଖିଛି । ଓଡ଼ିଶାର ତାତ୍କାଳୀନ ଅନ୍ୟତମ ଶିଳ୍ପୀ, ମୂକବଧିର କଳାଗୁରୁ ଶ୍ରୀ ବିପିନ ବିହାରୀ ଚୌଧୁରୀ ବିଲାତରୁ ଗ୍ରାଫିକଳା ସଂପର୍କରେ ବିଶେଷଜ୍ଞାନ ଲାଭକରି ଫେରିଥାନ୍ତି । ସେ ସେତେବେଳକାର ସବୁ ବିଶିଷ୍ଟ ନେତୃସ୍ଥାନୀୟ ଜନନାୟକମାନଙ୍କର ଆବକ୍ଷ ଚିତ୍ର ( Protrait )ମାନ ଅତି ଚମତ୍କାର ଭାବରେ ଆଙ୍କୁଥାନ୍ତି । ସେ ଦିନେ ଆସି ବାପାଙ୍କୁ ଦେଖାକଲେ । ମୁଁ ଦେଖିଛି ବାପା ହସି ହସି ସାଦରେ ତାଙ୍କୁ ଡ଼ାକାଇ ପକାଇଲେ । ଉପରଘରେ ନିରୋଳାରେ ଛବିଅଙ୍କା ପର୍ବ ଆରମ୍ଭ ହୁଏ । ବାପା ଉପର ମହଲର ପୂର୍ବପଟ ଝରକା ପାଖକୁ ଗୋଟିଏ ଚିଆରରେ ବସନ୍ତି ! ତାଙ୍କ ଦେହରେ ନିର୍ମଳ ଆଲୋକ ପଡୁଥାଏ । ବିପିନ୍‌ବାବୁ କକ୍ଷର ମଧ୍ୟସ୍ଥଳରେ ବସି "ବାପା"ଙ୍କୁ ଅନେଇ ଅନେଇ ସ୍କେଚ୍ କରୁଥାନ୍ତି । କି ଏକାଗ୍ରତା ! ଏ ଘଟଣା ଦେଖି ମୋର କୌତୂହଳ ଜନ୍ମିଲା । 'ବାପା' କଣ ଭାବିଲେ କେଜାଣି ମତେ ସ୍ମିତ ହାସ୍ୟରେ ଅନୁମତି ଦେଲେ ସେ ଘରେ ଗୋଟିଏ ପାଖକୁ ଚୁପ୍‌ଚାପ୍ ବସି ଦେଖିବାକୁ । ମୋର ମନେ ଅଛି ତାଙ୍କ ଛବି ଅଙ୍କା ସରିବା ପର୍ଯ୍ୟନ୍ତ ମୁଁ ବିପିନ୍‌ବାବୁଙ୍କର ଆସିଲାବେଳ ଉଣ୍ଡି ନିୟମିତ ଯାଇ ଉପରମହଲରେ ଚୁପ୍ ଚାପ୍ ବସେ ଓ ଛବି ଅଙ୍କା ଦେଖେ । ମଝିରେ ମଝିରେ କେତେବେଳେ 'ବାପା' ସେ ପଟୁ ଓ ବିପିନ୍‌ବାବୁ ଏପଟୁ ମୋ ଆଡ଼କୁ ଅନାଇ ଦେଇ ଟିକିଏ ଟିକିଏ ହସି ଦେଉଥାନ୍ତି । ଶେଷରେ ଯେଉଁଦିନ ସଂପୂର୍ଣ୍ଣ ଅଙ୍କା ହୋଇଥିବା ଛବିଟିକୁ ବିପିନ୍‌ବାବୁ ଆଣି ମତେ ଦେଖାଇଲେ ବାପା ଓ ଆମେ ଅନ୍ୟ ପିଲାମାନେ ସମସ୍ତେ ଦେଖି ଅବାକ୍ ହୋଇଗଲୁ । ଅବିକଳ 'ବାପା'ଙ୍କର ଆବକ୍ଷ ଛବି । ତା ପରେ ପରେ ବିପିନ୍‌ବାବୁଙ୍କ ସଙ୍ଗେ ଘନିଷ୍ଠତା ଜନ୍ମିଲା । ତାଙ୍କ ଘରକୁ ଯାଇ ତାଙ୍କର ଚିତ୍ର ଗ୍ୟାଲେରୀ ଦେଖିବାକୁ ସେ ଆମ ପିଲାମାନଙ୍କୁ ସାଦର ନିମନ୍ତ୍ରଣ କଲେ । ମୁଁ ବହୁଥର ଯାଇଛି ଓ ମୋ ଜୀବନରେ ସେ ମଧ୍ୟ ବହୁତ ଉତ୍ସାହ ଦେଇଛନ୍ତି ।

ପୁଣି ଭାସି ଆସୁଛି ଆଉ ଏକ ସ୍ମୃତିରୁ ଖିଏ । ବାବା ଓ ବାପାଙ୍କର ବଗିଚା ବୁଲକଥା । ସେ ଦୁହେଁ ମଝିରେ ମଝିରେ ସାନ ସାନ ପିଲାମାନଙ୍କୁ ନେଇ ବଗିଚା ବୁଲିଯାନ୍ତି । ରବିବାର ବା ଛୁଟି ଦିନମାନଙ୍କରେ ଅବସର କଟାଇବାକୁ ସେଇ ଟମ୍ ଟମ୍ ଘୋଡ଼ା ଗାଡ଼ିରେ ବସି ଟାଉନ୍ ହଲ୍ ରୋଡ଼ରେ ଥିବା ତାଙ୍କର ବଗିଚାକୁ ଆମମାନଙ୍କୁ ସାଙ୍ଗରେ ନେଇ ବୁଲି ଯିବାକୁ ଭାରି ଭଲ ପାଆନ୍ତି । ମୁଁ ମଧ୍ୟ କେତେଥର ପିଲାମାନଙ୍କ ସାଙ୍ଗରେ ମିଶି ତାଙ୍କ ସଙ୍ଗେ ବଗିଚା ଯାଇଛି । ସେଠାରେ ପହଞ୍ଚିଲେ ଆମ୍ଭମାନଙ୍କୁ ନାନା ପ୍ରକାର ଖାଦ୍ୟ ମିଳେ । ତା ଛଡ଼ା ଫେରିବା ବାଟରେ ଚୌଧୁରୀ ବଜାର ଦେଇ ଗାଡ଼ି ଆସେ । ତାତ୍କାଳୀନ ବିଶିଷ୍ଟ ଲୁଗି ବିଶାରଦ 'ପହିଲିମାନ'ଙ୍କ ଚୌଧୁରୀ ବଜାର ତେଜରାତି ଦୋକାନ ପାଖରେ ଆମ ଗାଡ଼ି ଯେମିତି ଅଟକେ ନିଜେ ପହିଲିମାନ ବାବୁ ତାଙ୍କ ଦୋକାନ ଉପରୁ ଓହ୍ଲାଇ ଆସି ଆନନ୍ଦରେ 'ବାବା' ଆଉ କି 'ବାପା' ଆନ୍ତୁ ସେମାନଙ୍କୁ ଦୋକାନକୁ ପାଛୋଟି ନିଅନ୍ତି ଓ ଭକ୍ତିପୂର୍ଣ୍ଣ ଆଦରମିଶା ଭାଷାରେ କଥାବାର୍ତ୍ତା କରନ୍ତି । ଆମ ପିଲାମାନଙ୍କୁ ବହୁତ ଖଜୁରକୋଳି, କିସ୍‌ମିସ୍, ବାଦାମପେସ୍ତା, ଆଖ୍‌ରୋଟ୍ ମନକା ଇତ୍ୟାଦି ନାନା ପ୍ରକାର ଫଳ ଖୁଆନ୍ତି । ଆମେ ସବୁ ସେତକ ଖାଇ ମହା ଆନନ୍ଦରେ ଘରକୁ ଫେରୁ । 'ବାବା' ଓ 'ବାପା' ବାଟଯାକ ଗାଡ଼ିରେ ଆମ ସଙ୍ଗେ ନାନା ପ୍ରକାରର ଶିକ୍ଷଣୀୟ କଥା ଗପି ଗପି ଆସୁଥାନ୍ତି । ସେଥିରେ ତାଙ୍କର କି ଆନନ୍ଦ !

ଥରେ ବାବୁଭାଇ (ଚିତ୍ତରଞ୍ଜନ) ଗୋଟିଏ 'ଭୋଇଗ୍‌ଲେଣ୍ଡର' ( Voightlender ) କ୍ୟାମେରା ଆଣି ସବୁ ପିଲାଙ୍କର ଫଟୋ ଉଠାଉଥାଆନ୍ତି । ବାପା ଉପରମହଲ୍ର ଛାତ ଉପରେ ସକାଳର କଅଁଳ ଖରାରେ ବସି ବାବୁ ଭାଇଙ୍କୁ ଉତ୍ସାହିତ କରୁଥାଆନ୍ତି । ସମସ୍ତଙ୍କର ଫଟୋ ଉଠାଗଲା, ତା ଭିତରେ ବାବୁଭାଇ ମୋର ମଧ୍ୟ ଗୋଟିଏ ଫଟୋ ଉଠାଇଲେ । ସେଥିରେ ମୋର କି ଆନନ୍ଦ ! ବାପା ଭାରି ଖୁସି ହେଲେ । ପିଲାଙ୍କ ଖୁସିରେ ତାଙ୍କର କି ଖୁସି !

ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ କାର୍ଯ୍ୟ ବାପା ସେତେବେଳେ ନୂତନ ଭାବେ ଆରମ୍ଭ କରିଥାନ୍ତି । ତାଙ୍କର ସେଥିରେ କି ଅଦମ୍ୟ ଉତ୍ସାହ, କି ପରିଶ୍ରମ ! ଉଚ୍ଚ ରକ୍ତଚାପ- ଥାଏ । ଦୁର୍ବଳ ଶରୀର, ତଥାପି ସେଥିରେ କି ନିଷ୍ଠା ! କି କର୍ମ ତତ୍ପରତା ! ସବୁବେଳେ ଡିକ୍‌ଟେସନ୍ ( Dictation ) ଚାଲିଥିବ । ଫାଇଲପତ୍ର ଦେଖୁଥିବେ । ରାଧା ଭାଇଙ୍କ ସଙ୍ଗେ ଆଲୋଚନା କଣ କରୁଥିବେ । ଉଭୟେ ପୁରୀଠିକୁ ଆସିବା କରୁଥିବେ ଇତ୍ୟାଦି ଇତ୍ୟାଦି । ସବୁକାର୍ଯ୍ୟ ଶୃଙ୍ଖଳାର ସହିତ ଚାଲିଥିବ । ଆଜି ମୁଁ ଭାବୁଛି ସେତେବେଳେ ସେ ନିଜେ ସେ ପ୍ରକାରର ପରିଶ୍ରମ ଓ ନିଷ୍ଠା ପ୍ରକାଶ କରି ନ ଥିଲେ ଆଜି 'ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ' ଭଳି ଏକ ବିରାଟ ଯୋଜନା କାର୍ଯ୍ୟକରୀ ହୋଇ ପାରି ନଥାନ୍ତା ।

ଆଜି ଗୋଟି ଗୋଟି ହୋଇ ମନେ ପଡ଼ି ଯାଉଛି ଆଉରି କେତେ ଘଟଣା । 'ବାବା'ଙ୍କ ନିର୍ବାଚନ ଉଦ୍ୟମ କଥା । ନିର୍ବାଚନ ବେଳେ ତାଙ୍କର କି ଅଟଳ ଅବିଚଳିତ ବ୍ୟକ୍ତିତ୍ୱ ମୁଁ ନିଜେ ଦେଖିଛି । ତା ପରବର୍ତ୍ତୀ କାଳରେ ହାଇକୋର୍ଟରେ ଆଡ୍‌ଭୋକେଟ୍ ଜେନେରାଲ ହେବା ବେଳର ବ୍ୟକ୍ତିତ୍ୱ ମଧ୍ୟ ଦେଖିଛି । ମୃଦୁ-ଭାଷୀ ଧୀର, ସ୍ଥିର ଓ ପ୍ରଶାନ୍ତ । ବାବା ସତେ ଯେପରି ଏକାଧାରରେ ଜଣେ ରାଜନୀତିଜ୍ଞ, ଆଇନଜ୍ଞ, ସମାଜସେବୀ ଓ ଦୟା, କ୍ଷମା ଏବଂ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ । ଅନ୍ୟ ପକ୍ଷରେ 'ବାପା' ଠିକ୍ ସେଇଭଳି ଜଣେ ପ୍ରତିଭାଶାଳୀ ରାଜନୀତିଜ୍ଞ, ସୁଦକ୍ଷ ପାର୍ଲାମେଣ୍ଟାରିଆନ୍ ( Veteran Parliamentarian ଯାହାଙ୍କୁ ତ୍ରୁ ପାର୍ଲାମେଣ୍ଟର ପିତା ବା Father of Parliament ବୋଲି କୁହାଯାଏ), ଜଣେ ବିଜ୍ଞ ବିଲାତ ଫେରନ୍ତା ଇଞ୍ଜିନିୟର, କେତେ ଯଶ, କେତେ ଖ୍ୟାତି ଏ ଆଖି ସବୁ ଦେଖିଛି ।

କେତେ ମହାମନା ଜନନାୟକମାନଙ୍କ ସଙ୍ଗେ 'ବାବା' ଓ 'ବାପା'ଙ୍କର ସୌଖ୍ୟ, ସଦ୍‌ଭାବ, ବନ୍ଧୁତା ମୁଁ ସେଇଠି ଥାଇ ଦେଖିଛି । ସେ ବାସଭବନକୁ ବିଭିନ୍ନ କାର୍ଯ୍ୟ ସଂକ୍ରାନ୍ତରେ ଅଥବା ସୌଜନ୍ୟ ସାକ୍ଷାତ କରିବାକୁ ଆସନ୍ତି । ପଣ୍ଡିତ ହୃଦୟନାଥ କୁଞ୍ଜରୁ, ନମସ୍ୟ ଠକ୍କର ବାପା, ପୂଜ୍ୟ ଶାରଙ୍ଗଧର ଦାସ, ତ୍ୟାଗୀ ଅନସୂୟା ପ୍ରସାଦ ପାଠକଜୀ, ଜାତୀୟ ନେତା ଧେବରଭାଇ ଇତ୍ୟାଦି । ସେ ହାସ ପରିହାସ, କଥୋପ କଥନ, କରମର୍ଦ୍ଦନ, ଆଲିଙ୍ଗନ ପ୍ରାଣ ଖୋଲା ଭାବର ଆଦାନ ପ୍ରଦାନ ସବୁ ମୁଁ ଲକ୍ଷ୍ୟ କରିଚି । ସେମାନେ ଆସିଛନ୍ତି ଆତିଥ୍ୟ ଗ୍ରହଣ କରିଛନ୍ତି । ଦେଶ ଓ ଦଶଙ୍କ ପାଇଁ, ବାବା ଓ ବାପାଙ୍କ ସଙ୍ଗେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଛନ୍ତି ଓ ଶେଷରେ ଆମ ଭଳି ପିଲାମାନଙ୍କ ସହ ମିଶି ଆମକୁ ସ୍ନେହ ପ୍ରଦାନ କରିଯାଇଛନ୍ତି । ଏ ସବୁ ଭୁଲି ହେବ ନାହିଁ ।

ପ୍ରତିବର୍ଷ ଆଉ ଗୋଟାଏ ପୁଣ୍ୟ ଦିବସକୁ ମୁଁ ବରାବର ଅନାଇ ଥାଏ । ତାହା ହେଉଚି ମାର୍ଚ୍ଚ ୪ ତାରିଖ । 'ମଧୁସ୍ମୃତି' ଦିବସଟିକୁ । ମଧୁ ବାବୁଙ୍କ ଜନ୍ମଦିନ—ମଧୁ ବାରିଷ୍ଟରଙ୍କ ଜୟନ୍ତୀ । ସକାଳୁ ସକାଳୁ କଲିଜିଏଟ୍ ଛାତ୍ରମାନଙ୍କର ଏକ ପ୍ରଭାତଫେରି ବାହାରେ । ସେଥିରେ ମୁଁ ଯାଏ । ପ୍ରାତଃ ସମୀରଣ ସେବନ କରି ମନରେ ଅପୂର୍ବ ପୁଲକ ଖେଳାଇ ସ୍ରୋତସ୍ୱତୀ ମହାନଦୀ କୂଳରେ ଗୋରାକବର ଠାରେ ସମସ୍ତେ ଯାଇ ଠୁଳ ହେଉ । ଅଦ୍ୱୈତ ବଲ୍ଲଭ ରାୟ ଓ ଲଳିତ ଦାଙ୍କ "ମାଆ ମାଆ ବୋଲି କେତେ ମୁଁ ଡ଼ାକିଲି......" ସଙ୍ଗୀତ ପରେ ମଧୁବାବୁଙ୍କ ସମାଧି ଉପରେ ପୁଷ୍ପ ଗୁଚ୍ଛ ପ୍ରଦାନ କଲାପରେ 'ବାବା' (ବିଚିତ୍ରାନନ୍ଦ) ଙ୍କର ସେଇ ଶୋକ ଗଦ୍ ଗଦ୍ ଭାଷଣ ଶୁଣିବା ପାଇଁ ମୋର ପ୍ରବଳ ଆଗ୍ରହ । ବାବା ତନ୍ମୟ ହୋଇ ମଧୁବାବୁଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରନ୍ତି । କି ଶାନ୍ତ ସରଳ ଭାଷା ! କି ଆବେଗ ସେଥିରେ । ଛଳ ଛଳ ନେତ୍ରରେ କି ତନ୍ମୟତା ! ସମବେତ ଶ୍ରୋତା ମଣ୍ଡଳି ତାଙ୍କ ଭାଷଣରେ ମନ୍ତ୍ର ମୁଗ୍ଧ ହୋଇ-ଯାନ୍ତି । 'ବାବା'ଙ୍କ ସେ ଭାବାବେଶ ମୁଁ ଆଜିଯାଏ ଭୁଲି ପାରି ନାହିଁ । କେବଳ ସେଇ 'ମଧୁସ୍ମୃତି' ଦିବସଟିକୁ ପ୍ରତିବର୍ଷ ମୁଁ ଅପେକ୍ଷା କରି ଥାଏ । ସେ ଦିବସଟି ଏଇଥିପାଇଁ ମୋ ମନରେ ଏକ ସ୍ୱତନ୍ତ୍ର ଶିହରଣ ଆଣେ ।

ଆହୁରି ମନେ ପଡ଼ି ଯାଉଛି ସେ ପରିବାରରେ ପୂଜା ଉତ୍ସବ ଓ ଅନୁଷ୍ଠାନ ଇତ୍ୟାଦିର କଥା । ଗଣେଶ ପୂଜା, ସରସ୍ୱତୀ ପୂଜା ଓ କୁଆଁର ପୁନେଇ ପୂଜା ଉତ୍ସବ ଗୁଡ଼ିକ ବାବା ଓ ବାପାଙ୍କ ପରିବାରରେ ମହା ସମାରୋହରେ ପାଳିତ ହୁଏ । ପ୍ରତି ବର୍ଷର ସେ ଦିନ ଗୁଡ଼ିକ କିପରି ପାଳନ କରାଯାଏ ତାହା ଦେଖିବାର କଥା । ସବୁ ପୁଅ ଝିଅମାନେ ନବ ବସ୍ତ୍ର ପିନ୍ଧି ଭୋଗ ଥାଳୀ ଧରି ପବିତ୍ର ଭାବରେ ପୂଜାସ୍ଥଳୀକୁ ଆସିବେ । 'ବାବା'ଙ୍କର ତଳମହଲର ଶୋଇବା ଘର ଧୁଆ ଧୋଇ କରି ପରିଷ୍କାର କରାଯାଏ । ସମସ୍ତେ ସେଇଠି ଠୁଳ ହୁଅନ୍ତି । ବିଶେଷତଃ ଝିଅମାନଙ୍କର କି ଆଗ୍ରହ ! ବୋଉ, ଲାବଣ୍ୟଅପା, ଗୌରୀ ଅପା ପୂଜାର ସମସ୍ତ କାର୍ଯ୍ୟ ଟିକିନିଖିକରି ବୁଝନ୍ତି । "ପିଲେ ବସ ସମସ୍ତେ ପାଟିକର ନାହିଁ । ବର୍ତ୍ତମାନ ପଣ୍ଡିତ ମହାଶୟ ଆସିବେ । ପୂଜା ହେବ ।" ଆମେ ସବୁ ଛୋଟ ପିଲା ଚୁପ୍ ଚାପ୍ ବସିଯାଉ । ଆସନ୍ତି ଆମର ଅପାମାନେ ଭୋଗ ଡାଲା ଧରି । କେତେ ଝିଅ ! ସେ ସାହିର, ଏ ସାହିର, ତଳ ସାହିର, ପାଖ ପଡ଼ିଶା ଘରର କେତେ ଝିଅ । ଗୋଟାଏ କୌତୁକିଆ କଥା ମନେ ପଡୁଚି । ଥରେ ବାବା ବାହାର ବରଣ୍ଡାରେ ବସି ସବୁ ପିଲାଙ୍କର ନାଁ ପଚାରନ୍ତି । ଝିଅମାନେ ସମସ୍ତେ ସେମାନଙ୍କର ନାଁ କହୁ କହୁ ବେଶୀ ସଂଖ୍ୟାରେ "ବୁଢ଼ୀ" ନାଁ ବାହାରିଲା । ବାବା କହିଲେ "ଆରେ ଏଠିତ ବେଶୀ 'ବୁଢ଼ୀ' ଅଛନ୍ତି ।" ହଠାତ୍ ଲାବଣ୍ୟ ଅପା ହସିଦେଲେ । କହିଲେ "କିଏ କୋଉ 'ବୁଢ଼ୀ' ଜାଣିବା କେମିତି ?" ଗୌରୀ ଅପା ବୋଧ ହୁଏ କହି ପକାଇଲେ "ଯିଏ ଯୋଉ 'ବୁଢ଼ୀ' ତାଙ୍କ ବାପାଙ୍କ ନାଁର ପ୍ରଥମ ଅକ୍ଷରକୁ ଯୋଡ଼ି ଡ଼ାକିଲେ ଆଉ ଅସୁବିଧା ହେବନି...." ସେଇଆ ହେଲା । ତେଣିକି ଡ଼ାକ ଶୁଭିଲା—'କୁ-ବୁଢ଼ୀ' (ସେ ସାହିର କୁଳମଣି ମହାନ୍ତିଙ୍କ ଝିଅ), 'ନେ-ବୁଢ଼ୀ' (ଆଉ ସାହିର ନେତ୍ରାନନ୍ଦ ବାବୁ ପୋଲିସ୍ ଅଫିସରଙ୍କ ଝିଅ), 'ଗୋ-ବୁଢ଼ୀ' (ଆମ ସାନ ଅଜା ବାବାଙ୍କ ପଡ଼ିଶା ଆଦର୍ଶ ଶିକ୍ଷକ ଗୋପାଳଚରଣ ମହାନ୍ତିଙ୍କ ଝିଅ) ଇତ୍ୟାଦି ଇତ୍ୟାଦି । ଭାରି ମଜା ଲାଗେ ଏଇ ନୂଆ ନାଁ ଗୁଡ଼ିକ ଶୁଣିବାକୁ । ସେଇଦିନଠୁ ସେମାନଙ୍କୁ ସେଇ ନାଁରେ ସମସ୍ତେ ଡ଼ାକିଲେ । ତାପରେ ଆସନ୍ତି ପଣ୍ଡିତ ମହାଶୟ ପୂଜା କରିବାକୁ । ତାଙ୍କ ନାଁଟି ଏବେ ଆଉ ମନେ ପଡୁ ନାହିଁ । ଆମେ କେହି କେହି ସାର ମଧ୍ୟ ଡାକୁ । ଗୋରା ହେଇ ଖୁବ୍ ଡେଙ୍ଗା, ଗୈରିକ ବସନ, ପାଚିଲା ଆମ୍ବ ପରି ଚେହେରା । 'ବାବା' ତାଙ୍କୁ ଆସିଲାମାତ୍ରେ ସୂଚାଇ ଦିଅନ୍ତି "ଶୀଘ୍ର ଶୀଘ୍ର ପୂଜା ସାରନ୍ତୁ । ପିଲାମାନେ ଉପାସରେ ଅପେକ୍ଷା କରିଛନ୍ତି ପରା......" ଖୁବ୍ ଧୁମ୍‌ଧାମରେ ପୂଜା ହୁଏ । ତା ପରେ ପତ୍ର ପଡ଼େ, ଲାବଣ୍ୟ ଅପା, ଗୌରୀ ଅପା, ପାଟଳ ଯୋଗୀ, ସଦା ଇତ୍ୟାଦି ସମସ୍ତେ କେତେ ସରାଗରେ ବିଭିନ୍ନ ଖାଦ୍ୟ ଦ୍ରବ୍ୟ ସବୁ ପରଷି ଦିଅନ୍ତି । ଏମିତି ଲାଗେ ସତେ, ଯେପରି ଆମେ ସମସ୍ତେ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ଲୋକ । 'ବାବା' କାହାକୁ ଛାଡ଼ନ୍ତି ନାହିଁ କହୁଥାନ୍ତି "ରହ ପିଲେ ସମସ୍ତେ ଖାଇ କରି ଯିବ......" । ଭୂରି ଭୋଜନ ପରେ ସମସ୍ତେ ଘରକୁ ଫେରୁ ।

ଆଜି ମୋର ଏ ପରିଣତ ବୟସରେ ଏ ସବୁ କଥା ଭାବିଲା ବେଳକୁ ମନରେ କୋହ ଆସୁଛି । ସେ ଘରେ 'ବାବା' ଓ 'ବାପା'ଙ୍କର ସବୁବେଳେ ଡାକ ଶୁଭୁଥାଏ ଆଡିଆ, 'ଯୋଗୀ', 'ସୁଧା', 'ଉତ୍ସବା', 'ମଧୁ' ଇତ୍ୟାଦି । ଆଜି ସେ ସବୁ ଡ଼ାକ ଆଉ ନାହିଁ ।

ଆଜି ସେ 'ବାବା' ନାହାନ୍ତି । ସେ 'ବାପା' ନାହାନ୍ତି । ବୋଉ ବି ନାହାନ୍ତି । ପିଲାମାନେ ସବୁ ଯାଇ ବିଭିନ୍ନ ସ୍ଥାନରେ କିଏ କେଉଁଠି ଅଛନ୍ତି । ସେ ଘର ଆଜି ଶ୍ରୀହୀନ ଦିଶୁଛି । ସେ ବିଶ୍ୱସ୍ତ ଅନୁଚରମାନେ ମଧ୍ୟ ଆଜି ନାହାନ୍ତି, ସେ ଆନନ୍ଦ ଉତ୍ସବ, କୋଳାହଳ ଆଉ ନାହିଁ । ସବୁ ନୀରବ, ନିସ୍ପନ୍ଦ କର୍ପୂର ଉଡ଼ି ଯାଇଚି କେବଳ ପଡ଼ି ରହିଛି କନା । ମୋର ସେ ଅଜା ଓ ଆଈମାନେ ମଧ୍ୟ ଆଉ ନାହାନ୍ତି । ମୁଁ ବି ଏ ମୋର ଲମ୍ବା ଜୀବନର ବହୁ ଘାତ ପ୍ରତିଘାତ ଭିତରେ କ୍ଳିଷ୍ଟ ପିଷ୍ଟ ହେଇ କଟକରେ ମୋର ଲୀଳା ଖେଳା କୋଳ କାନ୍ଥ ଛାଡ଼ି ଆଜି ଆସି ଭୁବନେଶ୍ୱରରେ ମୋର କର୍ମକ୍ଷେତ୍ର ବାଛି ନେଇଚି । ଖୁବ୍ କ୍ୱଚିତ୍ କେବେ ମାମୁଁ ଘରକୁ ଯାଏ । ଆଉ ଯେବେ ଯାଏ ବାବା ବାପାଙ୍କ ଭିଲ୍ଲା ( Villa ) ର ଦ୍ୱାର ଦେଶରେ ନୀରବରେ କ୍ଷଣେ ଠିଆହୋଇ ଭିତରକୁ ଟିକିଏ କରୁଣ ଦୃଷ୍ଟି ପକାଏ । ଭିତରେ ସଂପୂର୍ଣ୍ଣ ନୀରବତା ! ତାଆରି ଭିତରୁ କାହାର କ୍ଷୀଣ କାଶର ଅସ୍ପଷ୍ଟ ଶବ୍ଦ–ପତନରେ ଭାସି ଆସେ । ବୋଧ ହୁ... ଶେଷ ବିଶ୍ୱସ୍ତ ଅନୁଚର "ମଧୁ"ଙ୍କର ବି କଣ୍ଠ... ଦାଣ୍ଡ ଅଗଣା ଭିତରେ ସେ ପ୍ରକାଣ୍ଡ ବୁଢ଼ା ବେଲଗଛଟା ... ଝଡ଼ା ଦେଇ ମୂକସାକ୍ଷୀ ପରି ଠିଆ ହୋଇଛି । ... ଗେଟ୍ ଉପରେ ସେଇ ଶୁଖିଲ ମଧୁମାଳତୀ ଲତାଟା ... ହୋଇ ପଡ଼ିଅଛି । ତାଆରି ଭିତରେ ସୁଲୁସୁଲିଆ ପବନ ... ଯାଉଚି ସାଇଁ......ସାଇଁ.... । ଆଉ ସତେ ଯେପରି ... ଭିତରୁ ବାରମ୍ବାର ଧୀରେ ଧୀରେ ପ୍ରତିଧ୍ୱନିତ ହୋଇଆସି ... କାନରେ ବାଜିଯାଏ ସେଇ ସରାଗ ଭରା ଡ଼ାକ, ସବୁ ... ସେ ଅନ୍ତର ଭରା ଡ଼ାକ, ମୋର ସେଇ ପୁରୁଣା ମମତାଭୋଳା ଡ଼ାକ–"ବାବା", "ବାପା" !!

କ୍ୱାଟର ନଂ ୪୦/୨ ଟାଇପ୍–ଫୋର-ଏ
ଅଶୋକ ନଗର, ଭୁବନେଶ୍ୱର–୯



ପୁରୀରେ ସ୍ୱାଧୀନତା ଦିବସ ପାଳନ ଅବସରରେ ମନ୍ତ୍ରୀ ଶ୍ରୀ ଅନୁପ ସିଂହଦେଓ

# ସ୍ୱର୍ଗୀୟ ଜୀବନ୍ମା ସ୍ୱାମୀ ବିଚିତ୍ରାନନ୍ଦ ଦାସ

ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ୧୮୮୫ ମସିହା ମେ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଜନ୍ମ ଗ୍ରହଣ କରିଥିଲେ । ପୁରୀଜିଲ୍ଲା ବାଲିପାଟଣା ଥାନା ପ୍ରାଚୀ ନଦୀ କୂଳବର୍ତ୍ତୀ ଅମଣାକୁଦ ନିକଟରେ ଥିବା କୁରୁଞ୍ଜପୁର ଗ୍ରାମ ତାଙ୍କର ଜନ୍ମସ୍ଥାନ । ତାଙ୍କର ପିତାଙ୍କର ନାମ କାନୁନ୍‌ଗୋ ଶ୍ରୀ ରାମଚନ୍ଦ୍ର ଦାସ । ସ୍ୱର୍ଗୀୟ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ତାଙ୍କର ମଁଝା ଭାଇ ।

ସେ ୧୯୦୫ ମସିହାରେ କଟକର ରେଭେନ୍‌ସା କଲିଜିଏଟ ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ କରି କଲିକତାରେ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ୧୯୦୮ ମସିହାରେ ବି. ଏ. ପାସ କରି ୧୯୧୧ ମସିହାରେ ଓକିଲାତି ପାସ କଲେ । ଓକିଲାତି କଲାବେଳେ ସେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ସହକାରୀ ଭାବରେ କାର୍ଯ୍ୟ କରୁଥିଲେ । ଏଥି ପୂର୍ବରୁ ମଧ୍ୟ ସେ ମଧୁବାବୁଙ୍କ ସହିତ ସଂପୃକ୍ତ ଥିଲେ । ୧୯୦୨ ମସିହାରେ ଛାତ୍ରାବସ୍ଥାରେ ସେ ମଧୁବାବୁଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଯୁବ ସମାଜର ସଦସ୍ୟ ରୂପେ ସମାଜ ସେବା ତଥା ଜାତୀୟ କାର୍ଯ୍ୟରେ ଲିପ୍ତ ଥିଲେ । ତାଙ୍କର ବହୁମୁଖୀ କର୍ମମୟ ଜୀବନର ବିଭିନ୍ନ କୃତି ଏହି ପ୍ରକାର—

୧ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ସେ ମଧୁବାବୁ ତଥା ତାଙ୍କ ଭାଇ ଭୁବନାନନ୍ଦ ଦାସ ପ୍ରମୁଖ ନେତୃବର୍ଗଙ୍କ ସାହାଚର୍ଯ୍ୟରେ ଏବଂ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ଉତ୍କଳ ସମ୍ମିଳନୀର ସଭାପତି ମଧ୍ୟ ହୋଇଥିଲେ ଓ ଓଡ଼ିଆ ଭାଷାଭାଷୀ ବିଭିନ୍ନ ଅଞ୍ଚଳଗୁଡ଼ିକୁ ଓଡ଼ିଶାର ଅନ୍ତର୍ଭୁକ୍ତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ ।

୨ । ସ୍ୱାଧୀନତା ସଂଗ୍ରାମ ଓ ରାଜନୈତିକ ଜୀବନ :— ସେ ୧୯୨୦ ମସିହାରେ କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ଯଥାକ୍ରମେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଆପଣାକୁ ନିୟୋଜିତ କରିଥିଲେ । ତାଙ୍କର କଟକ ଡ଼ଗରପଡ଼ାରେ ଥିବା ବାସସ୍ଥାନ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଆଶ୍ରୟସ୍ଥଳ ଥିଲା । ଜେଲରୁ ଖଲାସ ହୋଇଥିବା ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କଠାରୁ ସବୁ ପ୍ରକାର ସାହାଯ୍ୟ ଓ ସହାନୁଭୂତି ପାଉଥିଲେ ଏବଂ ଅନେକ ସଂଗ୍ରାମୀ ତାଙ୍କର ଯଥା – ସର୍ବସ୍ୱ ସ୍ୱାମୀଜୀଙ୍କ ନିକଟରେ ନିରାପଦ ଭାବରେ ଜମା ରଖିବାକୁ ଭରସା କରୁଥିଲେ । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାପରେ ଓଡ଼ିଶା ବିଧାନ ସଭାର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ଏବଂ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ବ୍ରିଟିଶ ସରକାରଙ୍କ ଅନେକ ଜନସ୍ୱାର୍ଥ ବିରୋଧୀ ଆଇନକୁ ସେ ଦୃଢ଼ ଭାବରେ ବିରୋଧ କରିଥିଲେ କିନ୍ତୁ ଦେଶ ସ୍ୱାଧୀନ ହେଲାପରେ ତାଙ୍କର ବାଗ୍ମୀତା ଓ ଆଇନଗତ ଅଭିଜ୍ଞତା ବିଧାନ ସଭାର ବାହାରେ ଏବଂ ଲୋକପ୍ରିୟ ସରକାରଙ୍କ ତରଫରୁ କେସ ଲଢ଼ିବା ଉଦ୍ଦେଶ୍ୟରେ ନିଯୁକ୍ତି କରିବା ପାଇଁ ସ୍ଥିର କରାଗଲା ଏବଂ ୧୯୪୮ ମସିହାରେ ସେ ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ ଜେନେରାଲ ପଦରେ ଅଧିଷ୍ଠିତ ହେଲେ । କିନ୍ତୁ ପରେ ସେ ବିଧାନସଭାକୁ ପୁଣି ଫେରି ଯାଇଥିଲେ ଏବଂ ମଝିରେ କଂଗ୍ରେସ ଶାସନରୁ ଓହରି ଆସିଲାପରେ ସେ କିଛି ବର୍ଷପାଇଁ ବିଧାନ ସଭାର ବିରୋଧୀ ଦଳର ନେତା ରୂପେ ନିର୍ବାଚିତ ହୋଇଥିଲେ କିନ୍ତୁ କ୍ରମଶ ସେ ରାଜନୀତିରୁ ଦୂରେଇ ଯାଇ ତାଙ୍କର ସମସ୍ତ ସମୟ ସମାଜ କଲ୍ୟାଣ ଓ ଗଠନାତ୍ମକ କାମରେ ବିତାଉଥିଲେ ।

୩ । ଆଇନ ବ୍ୟବସାୟ :— ସ୍ୱାମୀଜୀଙ୍କ ଜୀବନରେ ଆଇନ ବ୍ୟବସାୟ ନାମମାତ୍ର ବ୍ୟବସାୟ ହୋଇ ରହିଥିଲା । ଆଇନ ଅଦାଲତରେ ସେ ଗରିବ ଲୋକଙ୍କଠାରୁ ଫିସ ନେଉ ନଥିଲେ ଏବଂ କୌଣସି ମିଛ ମାମଲାରେ ହାତ ଦେଉ ନଥିଲେ । ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ଆଜି, କନିକା ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଯୋଗ ଦେଇ ଯେଉଁମାନେ ଅଭିଯୁକ୍ତ ହୋଇଥିଲେ ଏବଂ ଜେଲ ଭୋଗୁଥିଲେ ସେ ସେମାନଙ୍କ ପାଇଁ କେବଳ ବିନା ଫିସରେ ଲଢ଼ୁଥିଲେ ତାହାନୁହେଁ, ସେମାନଙ୍କୁ ଯଥାବିଧି ସାହାଯ୍ୟ ମଧ୍ୟ କରୁଥିଲେ । ସେ କେତେ ବର୍ଷ ଯାଏ ଓଡ଼ିଶା ହାଇକୋର୍ଟ ବାର କାଉନ୍‌ସିଲର ସଭାପତି ପଦ ମଧ୍ୟ ଅଳଂକୃତ କରିଥିଲେ ।

୪ । ସମାଜ ସେବା :—ଜନ ସେବାହିଁ ସ୍ୱାମୀଜୀଙ୍କ ଜୀବନର ପରମ ବ୍ରତ ଥିଲା । ମହାତ୍ମା ଗାନ୍ଧୀଙ୍କ ପ୍ରେରଣା ଛଡ଼ା ବିବାହର ଅଳ୍ପ କେତୋଟି ବର୍ଷ ପରେ ୧୯୧୮ ମସିହାରେ ପତ୍ନୀକୁ ହରାଇ ସେ ନିଜକୁ ସମସ୍ତ ବିଳାସ ବ୍ୟସନରୁ ବଞ୍ଚିତ କରି ଜନ.ସେବାରେ ନିୟୋଜିତ କରିବା ଶ୍ରେୟ ବୋଲି ମନେ

ଜଳେ । ୧୯୧୮ ରୁ ୧୯୨୨ ମସିହା ମଧ୍ୟରେ ଯେଉଁ ପ୍ରଳୟଙ୍କରୀ ଧାରାବାହିକ ବନ୍ୟା ଓଡ଼ିଶାର ଜନ ସାଧାରଣଙ୍କ ପାଇଁ ଘୋର ଦୁର୍ଦ୍ଦଶାର କାରଣ ହୋଇଥିଲା ସ୍ୱାମୀଜୀ ସେଥିରେ ବ୍ୟଥିତ ହୋଇ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସେବା ସାହାଯ୍ୟ ପାଇଁ ଅପ୍ରାଣ ପରିଶ୍ରମ କରିଥିଲେ ଏବଂ ଅନେକ ସମାଜ ବ୍ୟବସ୍ଥାର ସୂତ୍ରପାତ କରିଥିଲେ । ଏହି ସଂଘାତରେ ସେ ବନ୍ୟାକ୍ଲିଷ୍ଟ ଗୃହ ବାସହୀନ ବହୁ ଅନାଥ ଶିଶୁ, ଯୁବତୀ, ଓ ମହିଳାମାନଙ୍କ ଥଇଥାନ ପାଇଁ କଟକଠାରେ ଓଡ଼ିଶା ଅନାଥାଶ୍ରମ ପ୍ରତିଷ୍ଠା କରିଥିଲେ । ଏହା ଓଡ଼ିଶାର ପ୍ରଥମ ସମାଜ କଲ୍ୟାଣ ମୂଳକ ପ୍ରତିଷ୍ଠାନ ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସରକାରଙ୍କ ବିନା ସାହାଯ୍ୟରେ ତିଷ୍ଠି ରହିଥିଲା । ୧୯୨୩-୨୪ ମସିହାରେ ମହାତ୍ମା ଗାନ୍ଧୀ ସେହି ଆଶ୍ରମ ପରିଦର୍ଶନ କରି ତାଙ୍କ କାର୍ଯ୍ୟରେ ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କର ସମାଜ ସେବାରେ ମୁଗ୍ଧ ହୋଇ ଠକ୍କର ବାପା ତାଙ୍କୁ "ସ୍ୱାମୀଜୀ" ଉପାଧି ପ୍ରଦାନ କରିଥିଲେ । ଏହାଛଡ଼ା କୁଷ୍ଠ ନିବାରଣ ଆଦି ନାନା ସମାଜ କଲ୍ୟାଣ କାମରେ ତାଙ୍କର ପ୍ରଭୂତ ଅବଦାନ ଥିଲା । ଯଥାକ୍ରମେ ସ୍ୱାଧୀନ ଭାରତ ସରକାର ମଧ୍ୟ ତାଙ୍କ ସମାଜ ସେବାର ସ୍ୱୀକୃତି ସ୍ୱରୂପ "ପଦ୍ମଶ୍ରୀ" ସମ୍ମାନରେ ଭୂଷିତ କରିଥିଲେ ।

ଆନୁଷ୍ଠାନିକ ସମାଜକଲ୍ୟାଣ ଛଡ଼ା ଦୈନନ୍ଦିନ ଜୀବନରେ ସେ ଅନେକ ଦୁଃସ୍ଥ, ଛାତ୍ର, କର୍ମୀ ଓ ସାଧାରଣ ନାଗରିକଙ୍କୁ ସାହାଯ୍ୟ କରି ପରମ ଦାନୀ ରୂପେ ଖ୍ୟାତିଲାଭ କରିଥିଲେ । ଅତି ସରଳ ଜୀବନ ଯାପନ କରି ଓକିଲାତିରୁ ଯାହା କିଛି [illegible] ରହୁଥିଲା ସେ ସାହାଯ୍ୟାର୍ଥୀମାନଙ୍କୁ ବାଣ୍ଟି ଦେଉଥିଲେ । ତାଙ୍କର ବାସ ଭବନ ଉନ୍ମୁକ୍ତ ଅବାରିତ ଅତିଥିଶାଳା ରୂପେ ଗଣା ହେଉଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ରାଷ୍ଟ୍ରଭାଷା ପ୍ରସାର :— ନାନାଦି ଗଠନ ମୂଳକ କାର୍ଯ୍ୟ ମଧ୍ୟରେ ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରସାର ତାଙ୍କର ବିଶେଷ ଆଗ୍ରହ ଥିଲା । ଏବଂ ସେ ଓଡ଼ିଶାର ରାଷ୍ଟ୍ରଭାଷା ପ୍ରଚାର ସମିତିର ପ୍ରତିଷ୍ଠାତା ତଥା ଆଜୀବନ ସଭାପତି ଥିଲେ ।

ସେ ୯୦ ବର୍ଷ ବୟସରେ ୧୯୭୫ ମସିହା ଅକ୍ଟୋବର ୧୦ ତାରିଖରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ଇଚ୍ଛାନୁଯାୟୀ ତାଙ୍କପାଇଁ ସ୍ୱତନ୍ତ୍ର ସମାଧି ଗଢ଼ା ହୋଇ ନଥିଲା । କେବଳ ତାଙ୍କର ନାଁ ତାଙ୍କ ସ୍ତ୍ରୀଙ୍କ ସମାଧିରେ ଲିପିବଦ୍ଧ ନାଁ ରେ ଯୋଡ଼ି ଦିଆ ଯାଇଥିଲା । ତାଙ୍କର ଏକମାତ୍ର ସନ୍ତାନ ଲାବଣ୍ୟପ୍ରଭା ଦେବୀ ଓଡ଼ିଶାର ଭୂତପୂର୍ବ ସ୍ୱାସ୍ଥ୍ୟ ବିଭାଗର ଡ଼ାଇରେକ୍ଟର ସ୍ୱର୍ଗୀୟ ନାରାୟଣ ବନ୍ଧୁ ପଟ୍ଟନାୟକଙ୍କୁ ବିବାହ କରିଥିଲେ । ତା ଛଡ଼ା ସେ ତାଙ୍କର ଜ୍ୟେଷ୍ଠ ଭାଇ ଭୁବନାନନ୍ଦଙ୍କ ପୁଅ ଚିତ୍ତରଞ୍ଜନ ଦାସଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।


ସ୍ୱାମୀ ବିଚିତ୍ରାନନ୍ଦ ଦାସ



ରୁଷିଆର "ଜିପସି" ନୃତ୍ୟ ଓ ସଂଗୀତ ଶିଳ୍ପୀଙ୍କ ଗହଣରେ ମୁଖ୍ୟମନ୍ତ୍ରୀ ,

RUSSIAN 'GIPSY' TROUPE MEETS C.M.





ପୁରୀ ସଂସ୍କୃତ ବିଶ୍ୱବିଦ୍ୟାଳୟ ପକ୍ଷ
ମୁଖ୍ୟମନ୍ତ୍ରୀଙ୍କୁ 'ପ୍ରବୀଣାଚାର୍ଯ୍ୟ' ଉପା

C.M. REGIEVES DLLt FROM SANSKRIT UNIVERSITY



ଏନ.ଏସ.ଏସ. ତାଲିମ ଶିବିର ଉଦ୍‌ଘାଟନ

EDUCATION MINISTER SRI DASH MOHAPATRA INAUGURATING N.S.S. OFFICERS TRAINING AND ORIENTATION PROGRAMME CAMP.



"ପଞ୍ଜାବ ସମସ୍ୟା ଓ ପ୍ରଧାନମନ୍ତ୍ରୀଙ୍କଦ୍ୱାରା ଏହାର ସମାଧାନ" ଶୀର୍ଷକ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ.



ବିଶ୍ୱବିଦ୍ୟାଳୟ ପରିଚାଳନା ସମ୍ପର୍କିତ ଉଚ୍ଚସ୍ତରୀୟ ଆଲୋଚନାରେ ଶ୍ରୀ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ଅର୍ଥମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀ ।



ଢେଙ୍କାନାଳ ମୁଣ୍ଡିଆପଡ଼ା ଠାରେ ନବ ନିର୍ମିତ ସ୍ମୃତି ଉଦ୍ୟାନ କାର୍ଯ୍ୟାଳୟ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ସହ କେନ୍ଦ୍ରମନ୍ତ୍ରୀ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ



ରାଜୀବଙ୍କ ସହିତ ସୋଭିଏତ୍ ଉପରାଷ୍ଟ୍ରପତି ଶ୍ରୀ କୋଶେଭ୍ . KOSHOEV CALLS ON RAJIV



ଆକାଶ ମାର୍ଗରୁ ପଞ୍ଜାବର ବନ୍ୟାବିପ୍ଳୁତ ସର୍ବେକ୍ଷଣ . RAJIV'S AERIAL SURVEY OF PUNJAB FLOODS .



P.M. SRI GANDHI ADDRESSING A PUBLIC MEETING AT HUSSAIN PUR.

କପୁରତାଲା ନିକଟସ୍ଥ ହୁସେନପୁର ଠାରେ ସାଧାରଣ ସଭାରେ ପ୍ରଧାନମନ୍ତ୍ରୀ

• NATIONAL AWARDS TO NURSING PERSONNEL •



ଜାତୀୟ ପୁରସ୍କାର ବିଜୟିନୀ ନର୍ସ ମାନଙ୍କ ଗହଣରେ ରାଷ୍ଟ୍ରପତି

# ସଂକ୍ଷିପ୍ତ ଜୀବନୀ
# ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ

ସ୍ୱର୍ଗୀୟ ଶ୍ରୀ ଭୁବନାନନ୍ଦ ଦାସ ୧୮୮୫ ମସିହା ମେ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଜନ୍ମଗ୍ରହଣ କରିଥିଲେ । ପୁରୀ ଜିଲ୍ଲା ପିପିଲି ଥାନା ଅନ୍ତର୍ଗତ କୁରୁଂଜିପୁର ଗ୍ରାମରେ ତାଙ୍କର ଜନ୍ମ । ତାଙ୍କର ପିତାଙ୍କ ନାମ କାନୁନଗୋ ଶ୍ରୀ ରାମଚନ୍ଦ୍ର ଦାସ । ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ତାଙ୍କର ଯାଆଁଳା ଭାଇ । ତାଙ୍କ ଜନ୍ମର ଅଳ୍ପ କେତୋଟି ମୁହୂର୍ତ୍ତ ପୂର୍ବରୁ ବିଚିତ୍ରାନନ୍ଦଙ୍କ ଜନ୍ମ ହୋଇଥିବାରୁ ସେ ନିଜକୁ ସାନ ଓ ସ୍ୱାମିଜୀଙ୍କୁ ବଡ଼ ବୋଲି ମାନୁଥିଲେ ଓ ଦୁହେଁ ପରସ୍ପରକୁ ଲବ ଓ କୁଶ ବୋଲି ଡ଼ାକା ଡ଼ାକି ହେଉଥିଲେ ।

ସେ ୧୯୦୫ ମସିହାରେ କଟକର ରେଭେନ୍ସା କଲେଜିଏଟ ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କରିଥିଲେ । ଏହି ପରୀକ୍ଷାରେ ସେ ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇଥିଲେ । ୧୯୦୭ ମସିହାରେ ରେଭେନ୍ସା କଲେଜରୁ ପ୍ରଥମ ଶ୍ରେଣୀରେ ଏଫ୍. ଏ. ପାସ କରିଥିଲେ । ରେଭେନ୍ସା କଲେଜରେ ପଢୁଥିବା ବେଳେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଯୁବ ସମାଜ (Young Men's Association) ଉଦ୍ୟମରେ ଅନୁଷ୍ଠିତ ଇଂରାଜୀ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ ।

ଏଫ୍. ଏ. ପାସ କରିବାପରେ ସେ ଶିବପୁର ଇଂଜିନିୟରିଂ କଲେଜରେ ନାମ ଲେଖାଇଲେ । ସେଠାରୁ ୧୯୧୧ ମସିହାରେ କୃତିତ୍ୱ ସହ ଇଂଜିନିୟରିଂରେ ଡ଼ିଗ୍ରୀ ହାସଲ କରି ବୃତ୍ତି ପାଇ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାତ୍ରା କଲେ । ବିଲାତରେ ଗ୍ଲାସ୍‌ଗୋ ୟୁନିଭରସିଟିରୁ ଇଲେକ୍‌ଟ୍ରିକାଲ ଇଂଜିନିୟରିଂରେ ଗ୍ରାଜୁଏଟ ହୋଇ ଭାରତ ଫେରି ଆସିଲେ । ଓଡ଼ିଆମାନଙ୍କ ମଧ୍ୟରେ ଇଂଜିନିୟରିଂରେ ଏଭଳି ଉଚ୍ଚ ଶିକ୍ଷା ପୂର୍ବରୁ କେହି ପାଇ ନଥିଲେ । ଫେରିଆସି ସେ ବମ୍ବେଠାରେ B. E. S. T. (Bombay Electrical Supply and Transport) କଂପାନୀରେ ଗୋଟିଏ ଭଲ ଚାକିରି ପାଇଲେ । ଚାକିରିରେ ପ୍ରାରମ୍ଭିକ ବେତନ ଥିଲା ୭୦୦ ଟଙ୍କା ସେତେବେଳର ବେଶ ମୋଟା ଦରମା କହିଲେ ଚଳେ । କିନ୍ତୁ କେତେଦିନ ପରେ ତାଙ୍କୁ ନ୍ୟାଯ୍ୟ ପ୍ରମୋସନରୁ ବଞ୍ଚିତ କରି ଇଂରେଜ ହୋଇଥିବା ଯୋଗୁଁ ତାଙ୍କ ଅଧସ୍ତନ ଅଫିସରଙ୍କୁ ପ୍ରମୋସନ ଦେବାର ଅବିଚାରରେ କ୍ଷୁର୍ଣ୍ଣ ହୋଇ ସେ ଚାକିରି ଛାଡ଼ିଦେଲେ ଏବଂ ସ୍ୱାଧୀନ ବ୍ୟବସାୟ କରିବାପାଇଁ ସ୍ଥିରକଲେ । ତତ୍‌ସହ ଭାଇ ବିଚିତ୍ରାନନ୍ଦ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ କଂଗ୍ରେସରେ ଯୋଗ ଦେଲେ । ୧୯୨୧ ରେ ଅନୁଷ୍ଠିତ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ସେ ଓଡ଼ିଶାର ଏକମାତ୍ର ପ୍ରତିନିଧିରୂପେ ଯୋଗ ଦେଇଥିଲେ । ଏହାପରେ ତାଙ୍କର ଜୀବନଧାରା ସଂପୂର୍ଣ୍ଣ ଭିନ୍ନ ଭାବରେ ଗତି କଲା । ତାଙ୍କର ବହୁମୁଖୀ କର୍ମମୟ ଜୀବନର ଉଦ୍ୟମ ଓ କୃତିର ବିଭବ ଏହି ପ୍ରକାର ।

## ଶିଳ୍ପ ପ୍ରସାର

ଜଣେ ଉଚ୍ଚ ଶିକ୍ଷା ପ୍ରାପ୍ତ ବିଶିଷ୍ଟ ଇଂଜିନିୟର ହେବାହେତୁ ଭୁବନାନନ୍ଦ ବାବୁ ବିଦ୍ୟୁତ ଶିଳ୍ପରେ ବିଶେଷ ସହଯୋଗ ଦେଇଥିଲେ । ସେତେବେଳେ ଭାରତବର୍ଷରେ ବିଦ୍ୟୁତ ଶିଳ୍ପର ପରିସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା ଏବଂ ବଡ଼ ବଡ଼ ସହରର ବିଦ୍ୟୁତ ଉତ୍ପାଦନ ଓ ସରବରାହ ସଂସ୍ଥାମାନ ଇଂରେଜ ବ୍ୟବସାୟୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଭୁବନାନନ୍ଦ ବାବୁ ବିଦ୍ୟୁତ ଶିଳ୍ପକୁ ଭାରତୀୟ ଉଦ୍ୟୋଗର କର୍ତ୍ତୃତ୍ୱରେ ଆଣିବାପାଇଁ ବଦ୍ଧପରିକର ହେଲେ ଏବଂ ଏହି ପର୍ଯ୍ୟାୟରେ ସେ ଡ୍ରୋଚ୍, କାମ୍ପେ, ଶିଶରପୁର, ଆଲିଗଡ଼, ଗୟା, ଛାପ୍‌ରା, ରାଜମହେନ୍ଦ୍ରୀ ଓ କାକିନାଡ଼ା ପ୍ରଭୃତି ଭାରତର ବିଭିନ୍ନ ସହରରେ ବିଦ୍ୟୁତ ଉତ୍ପାଦନ ଓ ସରବରାହ ସଂସ୍ଥାମାନ ସ୍ଥାପିତ କରି ପାରିଥିଲେ । ଏହାଛଡ଼ା ସେ ରାଜକୋଟ ଓ ଅନ୍ୟ କେତୋଟି ରାଜ୍ୟର ବିଦ୍ୟୁତ ପରାମର୍ଶଦାତା ରୂପେ ନିଯୁକ୍ତ ହୋଇଥିଲେ । ଓଡ଼ିଶାରେ ଥିବା ମୟୂରଭଞ୍ଜ ରାଜ୍ୟର ରାଜା ସନାମଧନ୍ୟ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମଧ୍ୟ ତାଙ୍କୁ ବାରିପଦାର ବିଦ୍ୟୁତ ଯୋଗାଣ ପାଇଁ ପରାମର୍ଶଦାତା ଭାବରେ ଗ୍ରହଣ କରିଥିଲେ । ବିଦ୍ୟୁତ ଶିଳ୍ପ ଦିଗରେ ତାଙ୍କର ସର୍ବଶ୍ରେଷ୍ଠ କୃତି ଏହି ଯେ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ସେ ୧୯୪୦ ମସିହାରେ ଓଡ଼ିଶାର ପ୍ରଥମ ଜାତୀୟ ବିଦ୍ୟୁତ ସଂସ୍ଥା ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ କଂପାନୀର ପ୍ରତିଷ୍ଠାତା କରିଥିଲେ ।

ଓଡ଼ିଶାର ଉପକୂଳ ଅଞ୍ଚଳରେ ଲବଣ ଶିଳ୍ପର ପୁନରୁଦ୍ଧାର ନିମନ୍ତେ ଭୁବନାନନ୍ଦ ବାବୁ ତତ୍କାଳୀନ ଭାରତ ସରକାରଙ୍କୁ ଏକ ସ୍ମାରକ ପତ୍ର ଦେଇଥିଲେ । ପରବର୍ତ୍ତୀକାଳରେ ତାଙ୍କର ଯୋଜନା କାର୍ଯ୍ୟକାରୀ ହେବାଦ୍ୱାରା ଓଡ଼ିଶାରେ ଲବଣ ଶିଳ୍ପର ଅଗ୍ରଗତି ହୋଇଛି ।

ସେ ଫେଡ୍‌ରେସନ୍ ଅଫ୍ ଇଣ୍ଡିଆନ୍ ଚେମ୍ବରସ୍ ଅଫ୍ କମର୍ସ ଓ ଇଣ୍ଡଷ୍ଟ୍ରିଜ୍‌ର (Federation of Indian Chambers of Commerce & Industries ) ର ସଭ୍ୟ ଥାଇ ୧୯୨୯ ମସିହାରେ ଜେନେଭାରେ ଅନୁଷ୍ଠିତ ଆନ୍ତର୍ଜାତିକ ଶ୍ରମିକ ସମ୍ମିଳନୀରେ ଶ୍ରମିକ

ପରାମର୍ଶଦାତାରୂପେ ଯୋଗ ଦେଇଥିଲେ । ସେହିବର୍ଷ ତାଙ୍କର ଉଦ୍ୟମରେ ଓଡ଼ିଶା ଚେମ୍ବର ଅଫ୍ କମର୍ସ ପ୍ରତିଷ୍ଠିତ ହୋଇଥିଲା ।

ଭୁବନାନନ୍ଦ ବାବୁ ବହୁବର୍ଷ ଯାଏ ବିହାର ରାଜ୍ୟର ଶିକ୍ଷା ବୋର୍ଡ ଓ ବିହାର ଇଂଜିନିୟରିଂ କଲେଜରେ ପରିଚାଳନା ପରିଷଦର ସଭ୍ୟ ଥିଲେ । ତାଙ୍କରି ଉଦ୍ୟମରେ କଟକରେ ଇଂଜିନିୟରିଂ ସ୍କୁଲ ସ୍ଥାପିତ ହୋଇଥିଲା ଓ ଅନେକ ଦିନ ଯାଏ ସେ ତାହାର ସଭାପତି ଥିଲେ ।

## ରାଜନୀତି

ସର୍ବ ଭାରତୀୟ କ୍ଷେତ୍ରରେ ଭୁବନାନନ୍ଦ ବାବୁ ଶ୍ରୀ ବି. ଦାସ ନାମରେ ସୁପରିଚିତ । ପ୍ରଥମ ନାସ୍‌ନାଲିଷ୍ଟ ପାର୍ଟି ଓ ପରେ କଂଗ୍ରେସ ପାର୍ଟିର ସଭ୍ୟ ହିସାବରେ ଭୁବନାନନ୍ଦ ବାବୁ ୧୯୧୫ ମସିହାରୁ ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ୪୩ ବର୍ଷ ଯାଏ ଐତିହାସିକ କ୍ରମରେ ବିଭିନ୍ନ ନାମରେ ଅଭିହିତ କେନ୍ଦ୍ର ବିଧାୟକ ପରିଷଦକୁ ମନୋନୀତ ତଥା ନିର୍ବାଚିତ ହୋଇ ଦେଶର ବିଧାନମୂଳକ ଗଣତନ୍ତ୍ର ( Parliamentary democracy)ର ଭିତ୍ତି ସ୍ଥାପନା ଓ ଅଗ୍ରଗତିରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ଲୋକମୁଖରେ ତାଙ୍କୁ ସଂସଦର ପିତା (Father of the House) ବୋଲି କୁହାଯାଉଥିଲା । ସ୍ୱାଧୀନତା ପୂର୍ବରୁ ଲେଜିସ୍‌ଲେଟିଭ ଆସେମ୍ବଲି, ଏବଂ ସ୍ୱାଧୀନତା ପରେ ଯଥାକ୍ରମେ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବଲି, ଲୋକସଭା ଏବଂ ରାଜ୍ୟସଭାର ସଦସ୍ୟ ହୋଇ ସେ ସଂବିଧାନ ପ୍ରଣୟନ କ୍ଷେତ୍ରରେ ତଥା ବିଭିନ୍ନ କମିଟିର ସଦସ୍ୟ ଓ ସଭାପତି ରୂପେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । ଶ୍ରୀଯୁକ୍ତ ମୋତିଲାଲ ନେହୁରୁ, ଡକ୍‌ଟର ହୃଦୟନାଥ କୁଞ୍ଜରୁ, ଶ୍ରୀ କେ. ସି. ନିୟୋଗୀ, ପଣ୍ଡିତ ମଦନ ମୋହନ ମାଲବ୍ୟ, ଓଡ଼ିଶାର ଶ୍ରୀ ସାରଙ୍ଗଧର ଦାସ ପ୍ରମୁଖ ବିଭିନ୍ନ ନେତାଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ଥିଲା । ପାର୍ଲିଆମେଣ୍ଟର ଏକ ବରିଷ୍ଠ କମିଟି ପବ୍ଲିକ୍ ଆକାଉଣ୍ଟସ୍ କମିଟିର ସେ ପ୍ରଥମ ଓ ସବୁଠାରୁ ବେଶି ବର୍ଷ ଯାଏ ଚେୟାରମ୍ୟାନ୍ ହୋଇ ରହି କମିଟିର କାର୍ଯ୍ୟ ବିଧିକୁ ଏକ ବିଶେଷ ମର୍ଯ୍ୟାଦା ସଂପନ୍ନସ୍ତରକୁ ନେଇ ଆସି ପାରିଥିଲେ ବ୍ରିଟିଶ ପାର୍ଲିଆମେଣ୍ଟର ସଂସ୍କାର ଅନୁଯାୟୀ ବିରୋଧୀ ଦଳର ନେତା ବା ଆଉକେହି ଏହି କମିଟିର ଚେୟାରମ୍ୟାନ୍ ରୂପେ ମନୋନୀତ ହୁଅନ୍ତି । ଯେପରିକି ଆବଶ୍ୟକ ହେଲେ କମିଟି ସରକାରଙ୍କୁ ସମାଲୋଚନା କରିବାରେ ପଛଘୁଞ୍ଚା ଦେବନାହିଁ । କିନ୍ତୁ ଭୁବନାନନ୍ଦ ବାବୁ କଂଗ୍ରେସରେ ଥାଇ ମଧ୍ୟ ଏଭଳି ନିର୍ଭୀକ ଏବଂ ନିରପେକ୍ଷ ସଦସ୍ୟ ରୂପେ ଖ୍ୟାତିଲାଭ କରିଥିଲେ ଯେ ପ୍ରାୟ ୧୫ ବର୍ଷଯାଏ ତାଙ୍କୁ ନିର୍ବିବାଦରେ ଏହି କମିଟିର ସଭାପତି ରୂପେ ବଛାଯାଇଥିଲା । ଏହାଛଡ଼ା ସେ ବିଭିନ୍ନ ସମୟରେ ବିଧାୟକ କଂଗ୍ରେସ ଦଳର ମୁଖ୍ୟ କାରପଦ୍‌ଦାର ( Chief Whip) ଓ କୋଷାଧ୍ୟକ୍ଷ ଥିଲେ । ନାନାଦି ଆଇନ୍ ପ୍ରଣୟନ ମଧ୍ୟରେ ବାଲ୍ୟ ବିବାହ ଉଚ୍ଛେଦ ଆଇନ୍ ସଂଶୋଧନ ଓ ଇଂପିରିଆଲ ବ୍ୟାଙ୍କର ଜାତୀୟକରଣ ତାଙ୍କର ବିଶେଷ ଅବଦାନ ରୂପେ ଗୃହୀତ ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଭୁବନାନନ୍ଦ ବାବୁଙ୍କର ଅବଦାନ ଚିରସ୍ମରଣୀୟ । କେନ୍ଦ୍ରୀୟ ବିଧାନ ସଭାର ସଭ୍ୟ ଥିଲାବେଳେ ସେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଏକ ପ୍ରସ୍ତାବ ଆଣିଥିଲେ । କେନ୍ଦ୍ରୀୟ ବିଧାନ ସଭା ଏହି ପ୍ରସ୍ତାବକୁ ସମର୍ଥନ କରି ତତ୍‌କାଳୀନ ମାନ୍ଦ୍ରାଜ ରାଜ୍ୟ ଅନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସଂପର୍କରେ ଅନୁସନ୍ଧାନ ପାଇଁ ଫିଲିପ୍ ଡ଼ଫ୍ କମିଟି ନାମରେ ଅଭିହିତ ଏକ କମିଟି ନିଯୁକ୍ତ କରିଥିଲେ । ସାଇମନ କମିଶନ୍ ମଧ୍ୟ ଏହି ଦାବୀ ଗ୍ରହଣ କରିଥିଲେ । ମାତ୍ର ଏହାର ଶେଷ ନିଷ୍ପତ୍ତି ଲଣ୍ଡନଠାରେ ହେଉଥିବା ଗୋଲ୍‌ଟେବୁଲ ବୈଠକରେ ରାଜନ୍ୟମଣ୍ଡଳୀ ତରଫରୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଦେବ, ଖଲିକୋଟ ରାଜା ରାମଚନ୍ଦ୍ର ଦେବ ଏବଂ ଉତ୍କଳ ୟୁନିୟନ କନ୍‌ଫରେନ୍‌ସ ତରଫରୁ ଭୁବନାନନ୍ଦ ବାବୁଙ୍କ ବିଶେଷ ଚେଷ୍ଟା ଯୋଗୁ ହୋଇପାରିଥିଲା । ୧୯୩୨ ମସିହାରେ ଶେଷ ଭାଗରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ନିଷ୍ପତ୍ତି କରାଗଲା । ଏହି ସଂକ୍ରାନ୍ତରେ ଗଢ଼ା ହୋଇଥିବା ସବ୍ କମିଟିରେ ଭୁବନାନନ୍ଦ ବାବୁ ଆଦିବାସୀମାନଙ୍କୁ ନବ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବାପାଇଁ ଦାବୀ କରିଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ପରେ ମଧ୍ୟ ବିଚ୍ଛିନ୍ନ ଗଡ଼ିକୁ ଓଡ଼ିଶାରେ ମିଶାଇବା ପାଇଁ ସେ ଓ ତାଙ୍କ ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଆପ୍ରାଣ ଚେଷ୍ଟା କରିଥିଲେ । ଭୁବନାନନ୍ଦ ବାବୁ ମଧ୍ୟ ତାଙ୍କ ଭାଇଙ୍କ ପରି ଉତ୍କଳ ସମ୍ମିଳନୀରେ ସଭାପତି ରୂପେ ନିର୍ବାଚିତ ହୋଇଥିଲେ ।

## ଅନ୍ୟାନ୍ୟ

ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଭୁବନାନନ୍ଦ ବାବୁଙ୍କର ବିଶେଷ ଯୋଗଦାନ ଥିଲା । ୧୯୨୭ ରେ ସେ ଓଡ଼ିଶାରୁ 'ୟଙ୍ଗ ଉତ୍କଳ' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ବମ୍ବେରେ ଥିଲାବେଳେ ସେ ସାପ୍ତାହିକ (Roy's Weekly) "ରଏଜ୍ ଉଇକ୍‌ଲି" ପତ୍ରିକା ସହିତ ସଂପୃକ୍ତ ଥିଲେ । ଦିଲ୍ଲୀରେ ଥିଲାବେଳେ ସେ ନାନାଦି ଇଂରାଜୀ ପତ୍ରିକାରେ ବହୁ ଉପାଦେୟ ପ୍ରବନ୍ଧ ପ୍ରକାଶ କରିଥିଲେ । ସୁପ୍ରସିଦ୍ଧ ସାମ୍ବାଦିକ ସାର ଉଷାନାଥ ସେନ୍ ତାଙ୍କର ଜଣେ ବିଶେଷ ବନ୍ଧୁ ଥିଲେ । ରେଡ଼କ୍ରସ୍ ସଂସ୍ଥା ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା ଏବଂ କେତେଦିନ ଯାଏ ସେ ଇଣ୍ଡିଆ ରେଡ଼କ୍ରସ୍ ସୋସାଇଟିର ଭାଇସ୍ ପ୍ରେସିଡ଼େଣ୍ଟ ଥିଲେ ।

ସେ ୧୯୫୮ ମସିହା ଫେବୃଆରୀ ୨୩ ତାରିଖରେ ୭୩ ବର୍ଷ ବୟସରେ ଦିଲ୍ଲୀଠାରେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁ ବେଳକୁ ସେ ରାଜ୍ୟସଭାର ସଦସ୍ୟ ଥିଲେ । ତାଙ୍କର ମରଦେହକୁ ସମ୍ମାନେ ଦିଲ୍ଲୀରେ ନିଗମବୋଧଠାରେ ଚିତାଗ୍ନି ଦିଆଯାଇଥିଲା । ସେହି ସମୟରେ ତାଙ୍କର ୫ ନମ୍ବର ଫିରୋଜସାରୋଡ଼ ବାସଭବନରେ ସ୍ୱର୍ଗୀୟ ପ୍ରଧାନ ମନ୍ତ୍ରୀ, ଜବାହାରଲାଲ ନେହୁରୁ, ସର୍ବପଲ୍ଲୀ ରାଧାକ୍ରିଷନ୍ ଓ ସ୍ୱର୍ଗୀୟ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ପ୍ରମୁଖ ବହୁ ନେତୃବୃନ୍ଦ ଉପସ୍ଥିତ ଥିଲେ ଏବଂ ସ୍ୱର୍ଗୀୟ ଲାଲ୍‌ବାହାଦୁର ଶାସ୍ତ୍ରୀ ତାଙ୍କର ଅନ୍ୟତମ ଶବ ବାହକ ଥିଲେ ।

## ପରିବାର

ସେ ବିଳମ୍ବରେ ପ୍ରାୟ ୩୯ ବର୍ଷ ବୟସରେ ଗଞ୍ଜାମର ବିଶିଷ୍ଟ କଂଗ୍ରେସ ନେତା ନିରଞ୍ଜନ ପଟନାୟକଙ୍କର ଭଗ୍ନୀ ରୁକ୍ମଣୀ ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଚାରି ଝିଅ ଓ ଦୁଇ ପୁଅ ଜୀବିତ ଅଛନ୍ତି ।

ପୁଅମାନଙ୍କ ନାମ ଶ୍ରୀ ଚିରରଞ୍ଜନ ଦାସ, ବମ୍ବେରେ ଥିବା ଟାଟା ଏନର୍ଜି ରିସର୍ଚ୍ଚ ଇନ୍‌ଷ୍ଟିଚିଉଟରେ ଏକ ଉଚ୍ଚ ପଦାଧୀକାରୀ ଏବଂ ଶ୍ରୀ ମୋତିରଞ୍ଜନ ଦାସ ଦାମୋଦର ଭ୍ୟାଲି କର୍ପୋରେସନ୍‌ର ଚିଫ୍ ଇଂଜିନିୟର ଅଛନ୍ତି, ଝିଅମାନଙ୍କ ନାମ—ଶ୍ରୀମତୀ କମଳା ମହାନ୍ତି, ସ୍ୱାଃ ଓଡ଼ିଶାର ଭୂତପୂର୍ବ ଉଠା ଜଳସେଚନ ବିଭାଗର ଡାଇରେକ୍‌ଟର ଶ୍ରୀ ହେମନ୍ତ କୁମାର ମହାନ୍ତି, ଶ୍ରୀମତୀ କୁମାରୀ ଦାସ, ସ୍ୱାଃ ଭାରତର ଭୂତପୂର୍ବ ଆଡ଼ିସିନାଲ ଡେପୁଟି ଅଡ଼ିଟର ଜେନେରାଲ ଶ୍ରୀ କିଶୋରୀ ଚରଣ ଦାସ; ଶ୍ରୀମତୀ ପ୍ରମିଳା ପଟନାୟକ, ସ୍ୱାଃ ଡକ୍‌ଟର କ୍ଷୀରୋଦ କୁମାର ପଟନାୟକ, ଓଡ଼ିଶା ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ ଓ ଶ୍ରୀମତୀ ସରଳା ଦାସ, ସ୍ୱାଃ—ଗୋପିକା ରଞ୍ଜନ ଦାସ ଦିଲ୍ଲୀରେ ଥିବା ଏନ. ସି.-ଇ. ଆର. ଟି. ର ଶାସକୀୟ ଅଧିକାରୀ ।



ପାର୍ଲାମେଣ୍ଟାରିଆନ୍ ଭୁବନାନନ୍ଦ ଦାସ୍

# ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁ ପାଇଁ ଲେଖା ଆବଶ୍ୟକ

ଓଡ଼ିଶା ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ପ୍ରକାଶ ପାଉଥିବା ଦୁଇଟି ପତ୍ରିକା 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ' ପାଇଁ ଲବ୍ଧ ପ୍ରତିଷ୍ଠିତ ଲେଖକ, ଗବେଷଣାକାରୀ ଓ ଗ୍ରନ୍ଥାକାରମାନଙ୍କଠାରୁ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ରାଜ୍ୟର ବିଭିନ୍ନ କ୍ଷେତ୍ର ଅର୍ଥାତ୍ ପ୍ରାଚ୍ୟବିଦ୍ୟା, ଐତିହାସିକ ଘଟଣାବଳୀ ସହିତ ଓଡ଼ିଶାର ପ୍ରସଙ୍ଗ, ଓଡ଼ିଶାର ଜଙ୍ଗଲ ତଥା ବନ୍ୟପ୍ରାଣୀ ସମ୍ପଦ, ନୃତତ୍ତ୍ୱ, ପରମ୍ପରା ଓ ଆଚାରବିଧି, ସଂସ୍କୃତି, ଶିକ୍ଷା, କୃଷି, ଶିଳ୍ପ ଉନ୍ନୟନ, ଗ୍ରାମାଞ୍ଚଳ ଉନ୍ନୟନ ଓ ପରିଚାଳନା, ବ୍ୟବସାୟ, ବାଣିଜ୍ୟ, ସାମାଜିକ ଓ ଅର୍ଥନୈତିକ ପ୍ରଗତି, ମନତତ୍ତ୍ୱ, ଶାସନ ପଦ୍ଧତି ପର୍ଯ୍ୟଟନ ପୀଠସ୍ଥଳୀ, ପରିବେଶ ସମ୍ପର୍କୀୟ ତଥ୍ୟ, ପର୍ଯ୍ୟଟନ, ବନ୍ୟପ୍ରାଣୀ, ପ୍ରତ୍ନତତ୍ତ୍ୱ ଓ ବିଂଶସୂତ୍ରୀ କାର୍ଯ୍ୟକ୍ରମ ରୂପରେଖ ପ୍ରଭୃତି ସମ୍ପର୍କରେ ଲେଖାମାନ ସଂଗ୍ରହ କରାଯାଉଛି । ସମ୍ପାଦନା ଓ ମୁଦ୍ରଣ କାର୍ଯ୍ୟର ସୁବିଧା ନିମନ୍ତେ ଲେଖକମାନେ ଫୁଲସ୍କେପ୍ କାଗଜର ଗୋଟିଏ ପୃଷ୍ଠାରେ ଯଥେଷ୍ଟ ମାର୍ଜିନ୍ ରଖି ସେମାନଙ୍କ ଲେଖାରୁ ସୁନ୍ଦର ଅକ୍ଷର ବା ଟାଇପ୍ କରି ତହିଁର ଦୁଇକିତା ନକଲ ପଠାଇବା ଆବଶ୍ୟକ । ପ୍ରକାଶନ ଯୋଗ୍ୟ ଲେଖାଗୁଡ଼ିକ ଲାଗି ଲେଖକମାନଙ୍କୁ ପାରିତୋଷିକ ଦିଆଯିବ ଓ ପ୍ରକାଶନ ଉପଯୋଗୀ ନ ହେବା ଲେଖାଗୁଡ଼ିକୁ ଲେଖକମାନଙ୍କୁ ଫେରସ୍ତ ଦିଆଯିବ । ଲେଖାଗୁଡ଼ିକ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସମ୍ପାଦକ, ସୂଚନା ଓ ଲୋକସମ୍ପର୍କ ବିଭାଗ ଓଡ଼ିଶା, ଭୁବନେଶ୍ୱର 751001 ଙ୍କ ଠିକଣାରେ ପଠାଇବାକୁ ଅନୁରୋଧ ।

**ନିର୍ଦ୍ଦେଶକ, ସୂଚନା ଓ ଲୋକ ସମ୍ପର୍କ**
**ଓଡ଼ିଶା, ଭୁବନେଶ୍ୱର**

# ମନଥିଲେ.....

ଶ୍ରୀ ଲଭିନସ୍ କ.ଡଣ୍ଡା

'ମନ ଥିଲେ ଧନ ମିଳେ' ପ୍ରବାଦଟି ଅକ୍ଷରେ ଅକ୍ଷରେ ସତ । କଥିତ ଅଛି – 'ମନର ମୂଳେ ଏ ଜଗତ ।' ଯେ କୌଣସି କାର୍ଯ୍ୟ କରିବାକୁ ଗଲେ ପ୍ରଥମେ ଲୋଡ଼ା ସରଳ ସୁଧାର ମନଟିଏ । ହାତ ପାଖରେ ସମ୍ବଳ ଥାଇ ମଧ୍ୟ ମନ ନ ଥିଲେ ସବୁ ପ୍ରକାର ଅସୁବିଧା । କର୍ମକୁ ଜୀବନର ମାନଦଣ୍ଡ ବୋଲି ଧରାଗଲେ, ସେଇ କର୍ମକୁ ସୁସ୍ଥରୂପେ ନିର୍ବାହ କରିବାକୁ ଦରକାର ମନଟିଏ । କାର୍ଯ୍ୟ ବିଷୟକ ଧାରଣା ଲାଭ କରିବା ପରେ ପରେ ତାହାର କାର୍ଯ୍ୟକାରିତା ଦିଗରେ ମଣିଷକୁ ଆଗେଇ ନେଇଥାଏ ସେଇ ମନ । ତେଣୁ ମନ ଅଛି ତ ସବୁ ଅଛି । ନିମିଷକେ ଇପ୍ସିତ କାର୍ଯ୍ୟଟି ହାତମୁଠାକୁ ଆସିଗଲା ବୋଲି ଧରି ନେବାକୁ ପଡ଼ିବ ।

ମାଛଚାଷ କୁହନ୍ତୁ ବା ମତ୍ସ୍ୟ ବିକାଶ କାର୍ଯ୍ୟକ୍ରମ ଯାହା କୁହନ୍ତୁ, ଏଥିପାଇଁ ପ୍ରକୃତରେ ଲୋଡ଼ା ସେଇ ମନ । ଗାଁ ଗହଳିରେ ଥିବା ଆମ ସାଧାରଣ ମଣିଷଙ୍କ ମନରେ ଯଦି ଉପଯୁକ୍ତ ଚେତନା ଉଦ୍ରେକ କରାଯାଏ, ତେବେ ସେମାନେ କାର୍ଯ୍ୟଟିକୁ ନିଜର ମନେ କରି ଆଗେଇ ନେବେ ନିଶ୍ଚୟ । ତା'ଛଡ଼ା ମତ୍ସ୍ୟ ଉନ୍ନୟନର ଅଧିକାଂଶ କାର୍ଯ୍ୟକ୍ରମ ନିର୍ଭର କରେ ଲୋକ ସମ୍ପୃକ୍ତି ଉପରେ ଏବଂ ଏଗୁଡ଼ିକ ମୁଖ୍ୟତଃ ଲୋକ କଲ୍ୟାଣ କାର୍ଯ୍ୟକ୍ରମ ।

ମାଛଚାଷ ଗୋଟିଏ ଏଭଳି ଧନ୍ଦା, ଯାହା କଥାରେ କହିଲେ କରି ହେବ ନାହିଁ । ଆଜିକାଲି ଚାଲିଥିବା ଆଧୁନିକ ଧରଣର ସଘନ ମିଶ୍ରିତ ମାଛଚାଷ ବା ନୂଆ ନୂଆ ଜ୍ଞାନ-କୌଶଳ (ଯାହା ଚାଷୀ ପାଖରେ ପହଞ୍ଚିବା ନିତାନ୍ତ ଜରୁରୀ), ସେଗୁଡ଼ିକୁ କ୍ଷେତ୍ର ଉପରେ ପ୍ରୟୋଗ କରି ଦେଖେଇ ଦେବା ଦରକାର । ଚାଷୀ ପ୍ରଣାଳୀଟିକୁ ନିଜ ଆଖିରେ କ୍ଷେତ୍ର ଉପରେ ଦେଖିବା ମାତ୍ରେ ତହିଁରୁ ଜ୍ଞାନ ଆହରଣ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଶିଖିନେବ । ତା'ପରେ ବିଭିନ୍ନ ଜନକଲ୍ୟାଣ କାର୍ଯ୍ୟକ୍ରମ, ମାଛ ଚାଷ ବା ମାଛଧରା ଆଦିରେ ସୁବିଧା ସୁଯୋଗ ମାଧ୍ୟମରେ ମାଛଚାଷୀ ବା ମାଛ ଧରାଳୀକୁ ଆଗେଇ ନେବାରେ ଆଜି କୌଣସି ଅସୁବିଧା ନାହିଁ ।

## ମାଛ ଚାଷ ପାଇଁ ପୋଖରୀ

ମାଛ ଚାଷକୁ ବିଧିବଦ୍ଧ ଭାବେ କରିବାକୁ ହେଲେ ଦରକାର ଅତି କମରେ ଅଧଏକର ଆୟତନ ବିଶିଷ୍ଟ ପୋଖରୀଟିଏ । ମାଛଚାଷ କରିବାକୁ ଆଗ୍ରହ ଥାଇ ମଧ୍ୟ ଅନେକ ଦରିଦ୍ର ଚାଷୀଙ୍କ ଭାଗ୍ୟରେ ପୋଖରୀ ଜୁଟେନି । ଆଜି କିନ୍ତୁ ସେ କଥା ନାହିଁ । ସମୟ ବଦଳିଛି । ମନ ଥିଲେ ପୋଖରୀଟିଏ ମିଳିବାରେ କୌଣସି ଅସୁବିଧା ନାହିଁ । କାରଣ ଓଡ଼ିଶା ଗ୍ରାମପଞ୍ଚାୟତ ଆଇନର ୮୬ ଧାରା ସଂଶୋଧନ ହେବା ଫଳରେ ଆଜି ଦୀର୍ଘ ୧୦ ବର୍ଷିଆ ମିଆଦୀରେ ଜଣେ ପୋଖରୀ ନଥିବା ଆଗ୍ରହୀ ମାଛଚାଷୀ ସପକ୍ଷରେ ଗୋଟିଏ ଗ୍ରାମପଞ୍ଚାୟତ ପୋଖରୀକୁ ପଟ୍ଟା ଦିଆଯାଇ ପାରୁଛି । ସାଧାରଣଙ୍କ ଏକରେ ପୋଖରୀ ଖୋଳେଇଲେ ଆଜିକାଲି ଅତି କମ୍‌ରେ ୧୨ ହଜାର ଟଙ୍କା ଲାଗିପାରେ । ଅଥଚ ମାଗଣାରେ ଚାଷୀକୁ ଯୋଗାଇ ଦିଆଗଲା ପୋଖରୀଟିଏ । ଅତି ଅଳ୍ପ ଖର୍ଚ୍ଚରେ ପୋଖରୀଟିର ପୁନରୁଦ୍ଧାର କରାଯାଇ ପାରିବ । ତାହା ମଧ୍ୟ ଚାଷୀକୁ ବିଭିନ୍ନ ସୂତ୍ରରୁ ଯୋଗାଇ ଦିଆଯାଉଛି ।

## ଡଙ୍ଗା ଜାଲପାଇଁ ଆର୍ଥିକ ସାହାଯ୍ୟ

ପାରଂପାରୀକ ରୀତିରେ ଡଙ୍ଗା ଓ ଜାଲ ସାହାଯ୍ୟରେ ନଦୀ, ହ୍ରଦ ଓ ସମୁଦ୍ର ଉପକୂଳ ଅଞ୍ଚଳରେ ମାଛଧରି ଜୀବିକା ନିର୍ବାହ କରୁଥିବା ମତ୍ସ୍ୟଜୀବୀମାନେ ସାଧାରଣତଃ ଦରିଦ୍ର । ଡଙ୍ଗା ଓ ଜାଲ କିଣିବା ପାଇଁ ମଧ୍ୟ ସେମାନଙ୍କର ଅର୍ଥାଭାବ ଘଟେ ଏ କ୍ଷେତ୍ରରେ ସେମାନଙ୍କୁ ଜାଲ ଓ ଡଙ୍ଗା ଖରିଦ ବାବଦକୁ ମତ୍ସ୍ୟଜୀବୀ ପିଛା ୬,୫୦୦ ଟଙ୍କା ଲେଖାଏଁ ବ୍ୟାଙ୍କ ଋଣ ଦିଆଯାଏ । ଋଣ ଉପରେ ଶତକଡ଼ା ୨୫ ଭାଗ ରିହାତି ବ୍ୟବସ୍ଥା ରହିଛି । ଦୈନନ୍ଦିନ ଧରା ହେଉଥିବା ମାଛରେ ବିକ୍ରିବଟାରୁ ଆୟ ଯାହା ମିଳିବ, କିସ୍ତିଓ୍ୱାରୀ ବ୍ୟାଙ୍କଋଣ ପରିଶୋଧ କରିହେବ ଏବଂ ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ଦିଗରେ ଏହା ମଧ୍ୟ ସହାୟତା କରିବ ।

## ଇ. ଆର୍. ଆର୍. ପି. ଜରିଆରେ ସାହାଯ୍ୟ

ଦାରିଦ୍ର୍ୟମୋଚନ କାର୍ଯ୍ୟକ୍ରମ ମଧ୍ୟରେ ଆମ ରାଜ୍ୟରେ ଗ୍ରାମାଞ୍ଚଳ ଦରିଦ୍ରତମ ବ୍ୟକ୍ତିମାନଙ୍କର ଆର୍ଥିକ ଉତ୍‌ଥାନ (ଇ. ଆର. ଆର. ପି.) ଯୋଜନା ଏକ ଅଭିନବ ପଦକ୍ଷେପ । ଏହାର ଲକ୍ଷ୍ୟ ହେଲା–ଯେଉଁ ଦରିଦ୍ରତମ ପରିବାରଙ୍କର ବାର୍ଷିକ ଆୟ ମାତ୍ର ୧,୨୦୦ ଟଙ୍କା ମଧ୍ୟରେ ସୀମିତ, ସେମାନଙ୍କୁ ପୋଖରୀରେ ମାଛଚାଷ, ଜଳଭଣ୍ଡାରରୁ ମାଛଧରା, ଲୁଣିପାଣି ମାଛଚାଷ ଓ ସମୁଦ୍ରରୁ ମାଛଧରା କାର୍ଯ୍ୟକ୍ରମ ଜରିଆରେ ଦାରିଦ୍ର୍ୟ ସୀମାରେଖାର

ଙ୍କୁ ନେଇ ଆର୍ଥିକ ଅବସ୍ଥାର ଆଶୁ ଉନ୍ନତି ଘଟାଇବା । ଉକ୍ତ ଯୋଜନାରେ ଶତକଡ଼ା ଶହେ ଭାଗ ରିହାତି । ଏହିକାର୍ଯ୍ୟକ୍ରମରେ ୧୯୮୦-୮୧ ମସିହାଠାରୁ ୧୯୮୩-୮୪ ମସିହା ପର୍ଯ୍ୟନ୍ତ ମୋଟ ୧୬,୦୩୩ ଜଣ ଉପଭୋକ୍ତା ଉପକୃତ ହୋଇଛନ୍ତି । ୧୯୮୪-୮୫ ମସିହାରେ ୨,୪୬୦ ଜଣ ଦରିଦ୍ରତମ ବ୍ୟକ୍ତିଙ୍କୁ ଏହି କାର୍ଯ୍ୟକ୍ରମ ପାଇଁ ଚିହ୍ନଟ କରାଯାଇଛି ।

## ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା

ଓଡ଼ିଶାର ୧୧ ଗୋଟି ଜିଲା–କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, ଗଞ୍ଜାମ, ଫୁଲବାଣୀ, କଳାହାଣ୍ଡି, କୋରାପୁଟ ସମ୍ବଲପୁର, ବଲାଙ୍ଗୀର ଓ ଢେଙ୍କାନାଳ ପ୍ରଭୃତି ଜିଲାରେ କାର୍ଯ୍ୟକାରୀ ହେଉଥିବା ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଏକ ଜନକଲ୍ୟାଣ କାର୍ଯ୍ୟକ୍ରମ । ଏହା ଏକ ବିଶ୍ୱ ବ୍ୟାଙ୍କ ପ୍ରକଳ୍ପ । ଏହାର ଉଦ୍ଦେଶ୍ୟ ହେଲା–ଆର୍ଥିକ ସହାୟତା, ସାମଗ୍ରୀ ଇତ୍ୟାଦି ଯୋଗାଣ ମାଧ୍ୟମରେ ଗାଁ ଗହଳିରେ ପତିତ ପୋଖରୀଗୁଡ଼ିକୁ ତୁରନ୍ତ ଚାଷୋପଯୋଗୀ କରିବା ଓ ଘରୋଇ ମାଛଚାଷୀମାନଙ୍କୁ ମାଛ ଚାଷରେ ତାଲିମ ଦେବା । ୧୯୮୦-୮୧ ମସିହାରୁ ୧୯୮୪-୮୫ ମସିହା ମଧ୍ୟରେ ୧୧,୯୮୩ ହେକ୍ଟର ପୋଖରୀକୁ ମାଛଚାଷ ଉପଯୋଗୀ କରାଯାଇ ପାରିଛି । ୨୮,୦୧୫ ଜଣ ମତ୍ସ୍ୟ ଚାଷୀ ଉପକୃତ ହୋଇଛନ୍ତି ଏବଂ ୭,୧୯୩ ଜଣ ବ୍ୟକ୍ତିଙ୍କୁ ମତ୍ସ୍ୟ ଚାଷରେ ତାଲିମ ଦିଆଯାଇଛି ।

## ସମନ୍ୱିତ ପଲ୍ଲୀଉନ୍ନୟନ ଯୋଜନା

ଗାଁ ଗହଳର କ୍ଷୁଦ୍ର ଚାଷୀ, ନାମମାତ୍ର ଚାଷୀ ଏବଂ ଅନ୍ୟ ଅନୁନ୍ନତ ଶ୍ରେଣୀ ପ୍ରଭୃତିଙ୍କୁ ମାଛଚାଷ ମାଧ୍ୟମରେ ଧନ୍ଦା ଯୋଗାଇ ଆର୍ଥିକ ଅବସ୍ଥାର ଆଶୁ ଉନ୍ନତି ଘଟାଇବା ସମନ୍ୱିତ ପଲ୍ଲୀ ଉନ୍ନୟନ ଯୋଜନାର ମୌଳିକ ଲକ୍ଷ୍ୟ । ଉକ୍ତ ଯୋଜନାରେ ସର୍ବସାଧାରଣ ମାଛଚାଷୀ ଓ ତଫସିଲଭୁକ୍ତ ଜାତିର ମାଛ ଚାଷୀମାନଙ୍କୁ ଶତକଡ଼ା ୩୩ $\frac{1}{3}$ ଭାଗ ରିହାତି ଏବଂ ଆଦିବାସୀ ମାଛଚାଷୀଙ୍କୁ ଶତକଡ଼ା ୫୦ ଭାଗ ରିହାତୀ ଦେବା ବ୍ୟବସ୍ଥା ରହିଛି । ଏଇ ଯୋଜନାଟିର ଦୁଇଟି ଭାଗ । ଗୋଟିଏ ହେଲ ପୋଖରୀରେ ମାଛଚାଷ ଏବଂ ଅନ୍ୟଟି ହେଲ ମାଛଧରା । ବିଗତ ୧୯୮୦-୮୧ ମସିହାଠାରୁ ୧୯୮୪-୮୫ ମସିହା ସୁଦ୍ଧା ୨୦,୧୮ ଜଣ ଦରିଦ୍ର ବ୍ୟକ୍ତି ଏଇ ଯୋଜନାରେ ଉପକୃତ ହୋଇଛନ୍ତି ।

## ନାବାର୍ଡ ଯୋଜନା

ମତ୍ସ୍ୟଜୀବୀ ସମବାୟ ସମିତି ଅଧୀନରେ ଯାନ୍ତ୍ରିକ ମାଛଧରା ପୋତ ମାଧ୍ୟମରେ ସମୁଦ୍ର ଉପକୂଳବର୍ତ୍ତୀ ମତ୍ସ୍ୟଜୀବୀମାନଙ୍କର କଲ୍ୟାଣ ନିମିତ୍ତ ବିହିତ ପଦକ୍ଷେପ ନିଆଯାଇଛି । ଏହି କାର୍ଯ୍ୟକ୍ରମଟିରେ ଆର୍ଥିକ ସହାୟତା କରୁଛନ୍ତି ଭାରତ ସରକାର କୃଷି ଗ୍ରାମ୍ୟ ବିକାଶ ବ୍ୟାଙ୍କ (ନାବାର୍ଡ) ସଂସ୍ଥା । ବାଲେଶ୍ୱର ଜିଲ୍ଲାର ଚାନ୍ଦିପୁର, ଧାମରା ଏବଂ ପୁରୀ ଜିଲ୍ଲାର କଂସବଂଶ ପୁରୀ ଜିଲ୍ଲାର ଅସ୍ତରଙ୍ଗଠାରେ ୧୦୫ ଗୋଟି ଯାନ୍ତ୍ରିକ ମାଛଧରା ପୋତ କାର୍ଯ୍ୟ କରୁଛି । ବିଗତ ପାଞ୍ଚବର୍ଷ ମଧ୍ୟରେ ୩,୮୪୬ ଟନ ସମୁଦ୍ର ମାଛ ଉତ୍ପାଦିତ ହୋଇ ୧ କୋଟି ୪୬ ଲକ୍ଷ ଟଙ୍କାରେ ତାହା ବିକ୍ରୀ ହୋଇଛି । ଏ ବାବଦରେ ୫୨୫ ମତ୍ସ୍ୟଜୀବୀ ପରିବାର ସିଧାସଳଖ ଉପକୃତ ହୋଇଛନ୍ତି ।

## ଏନ୍. ସି. ଡ଼ି. ସି. ର ଆର୍ଥିକ ସାହାଯ୍ୟ

ଦରିଦ୍ର ମତ୍ସ୍ୟଜୀବୀମାନଙ୍କର ଆର୍ଥିକ ଅବସ୍ଥାର ଆଶୁ ଉନ୍ନତି କଳ୍ପେ ଜାତୀୟ ସମବାୟ ବିକାଶ ନିଗମ (ଏନ. ସି. ଡି. ସି.) ମଧ୍ୟ ଅର୍ଥ ବିନିଯୋଗ ଦିଗରେ ପଶ୍ଚାତପଦ ହୋଇ ନାହାନ୍ତି । ୬୧ ଗୋଟି ମତ୍ସ୍ୟଜୀବୀ ସମବାୟ ସମିତିକୁ ନେଇ ଗଠିତ ବାଲୁଗାଁସ୍ଥିତ କେନ୍ଦ୍ରୀୟ ମତ୍ସ୍ୟଜୀବୀ ବାଣିଜ୍ୟିକ ସମବାୟ ସମିତିର ଗୋଟିଏ ବରଫକଳ ଓ ଶୀତଳ ଭଣ୍ଡାର ଏବଂ ଦୁଇଟି କ୍ୟାରିୟର ପାଇଁ ୮ ଲକ୍ଷ ୫ ହଜାର ଟଙ୍କା ବ୍ୟୟ ବରାଦ ଜାତୀୟ ସମବାୟ ବିକାଶ ନିଗମ ତରଫରୁ କରାଯାଇଛି । ଏହାଦ୍ୱାରା ୧୩,୦୫୫ ଜଣ ମତ୍ସ୍ୟଜୀବୀ ଉପକୃତ ହୋଇଛନ୍ତି । ହୀରାକୁଦ ଜଳଭଣ୍ଡାର ଅଞ୍ଚଳରେ ୧୧ ଲକ୍ଷ ୭ ହଜାର ଟଙ୍କା ବ୍ୟୟରେ ଥେବ୍ରାଠାରେ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ଆନୁକୂଲ୍ୟରେ କାର୍ଯ୍ୟକାରୀ ହେଉଛି ଏବଂ ୯ ଲକ୍ଷ ୩୦ ହଜାର ଟଙ୍କା ବ୍ୟୟରେ କଳିପାଲ୍ଲୀଠାରେ କଳିପାଲ୍ଲୀ ମତ୍ସ୍ୟଜୀବୀ ସମବାୟ ସମିତି ଆନୁକୂଲ୍ୟରେ କାର୍ଯ୍ୟକାରୀ ହୋଇଛି । ଏହି ଦୁଇଟି କାମର୍ଯ୍ୟେକ୍ରର ୭୮୧ ଜଣ ବ୍ୟକ୍ତି ଉପକୃତ ହୋଇଛନ୍ତି ।

## ମତ୍ସ୍ୟଜୀବୀ ଦୁର୍ଘଟଣା ବୀମା

ଦରିଦ୍ର ମତ୍ସ୍ୟଜୀବୀମାନଙ୍କୁ ସାହାଯ୍ୟଦେବା ଉଦ୍ଦେଶ୍ୟରେ ଏକ ନୂତନ କଲ୍ୟାଣକାରୀ ଯୋଜନା–"ଦୁର୍ଘଟଣା ବିମା ପଲିସି" ପ୍ରବର୍ତ୍ତନ କରାଯାଇଛି । ୧୯୮୩-୮୪ ମସିହାରେ ୧୦,୦୦୦ ମତ୍ସ୍ୟଜୀବୀ ଏହି ଯୋଜନା ପରିସରଭୁକ୍ତ ହୋଇଛନ୍ତି । ଏମାନଙ୍କ ମଧ୍ୟରୁ ସମୁଦ୍ରରେ ଦୁର୍ଘଟଣା ଜନିତ ମୃତ୍ୟୁହେତୁ ୩ ଜଣଙ୍କର ପରିବାରବର୍ଗଙ୍କୁ ପରିବାର ପିଛା ୧୫,୦୦୦ଟଙ୍କା ଲେଖାଏଁ ବିମାଟଙ୍କା କ୍ଷତିପୂରଣ ହିସାବରେ ଦିଆଯାଇଛି । ଚଳିତବର୍ଷ ଆହୁରି ୧୦ ହଜାର ସାମୁଦ୍ରିକ ମତ୍ସ୍ୟଜୀବୀଙ୍କୁ ଏହି ବୀମା ପରିସରଭୁକ୍ତ କରାଯାଉଛି । ପ୍ରଥମବର୍ଷରେ ବୀମାକାର ୧ଟଙ୍କା ଦେଇଥାଏ । ଦ୍ୱିତୀୟ ବର୍ଷ ୬ଟଙ୍କା ଏବଂ ତୃତୀୟ ବର୍ଷ ସଂପୂର୍ଣ୍ଣ ୧୨ ଟଙ୍କା ଦେଇଥାଏ ।

## ମତ୍ସ୍ୟଜୀବୀ ସଞ୍ଚୟ-ସାହାଯ୍ୟ ଯୋଜନା

ସମୁଦ୍ରରେ ମାଛଧରି ଜୀବିକାର୍ଜ୍ଜନ କରୁଥିବା ମତ୍ସ୍ୟଜୀବୀମାନଙ୍କ କଲ୍ୟାଣପାଇଁ ମତ୍ସ୍ୟଜୀବୀ ସଂଚୟ ଓ କଲ୍ୟାଣ ପାଣ୍ଠି ନୂତନ ଯୋଜନାଟିର ପ୍ରବର୍ତ୍ତନ କରାଯାଇଛି । ଉକ୍ତ କାର୍ଯ୍ୟକ୍ରମ ଅନୁସାରେ ସଂପୃକ୍ତ ମତ୍ସ୍ୟଜୀବୀମାନେ ଜୁଲାଇଠାରୁ ମାର୍ଚ୍ଚ ୯ମାସ ପର୍ଯ୍ୟନ୍ତ ମାସିକ ୧୦ଟଙ୍କା ଲେଖାଏଁ "ଡାକଘର ପାସ୍ ବୁକ୍‌ରେ ଜମା ରଖିବେ । ମତ୍ସ୍ୟଜୀବୀଙ୍କ ଜମା ଟଙ୍କା ସହିତ ସରକାର ଆହୁରି ୯୦ଟଙ୍କା ପାସ୍‌ବୁକ୍‌ରେ ଜମା ରଖିବେ । ଏଇ ଜମାଟଙ୍କାରୁ ବେ-ରୋଜଗାରୀ ସମୟରେ ୩ମାସ ପାଇଁ ମାସିକ ୬୦ଟଙ୍କା ଲେଖାଏଁ ପ୍ରତି ମତ୍ସ୍ୟଜୀବୀଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଉଛି । ଗତବର୍ଷ ଏହି କାର୍ଯ୍ୟକ୍ରମରେ ୪୫ ହଜାର ଟଙ୍କା ବ୍ୟୟ କରାଯାଇଛି । ଏହାଦ୍ୱାରା ୫୦୦ ଅଧିକ ମତ୍ସ୍ୟଜୀବୀ ଉପକୃତ ହୋଇଛନ୍ତି ଚଳିତ ୧୯୮୫-୮୬ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମ ପାଇଁ ଆହୁରି ୪୫ ହଜାର ଟଙ୍କା ବ୍ୟୟ

ବଢ଼ାଇ ଅଛି । ପୂର୍ବ ବର୍ଷଠାରୁ ଆହୁରି ୫୦୦ଜଣ ମତ୍ସ୍ୟଜୀବୀ ଉପକୃତ ହୋଇଛନ୍ତି । ସୁଖର କଥା, ଏହି ଯୋଜନାଟି କ୍ରମଶଃ ଲୋକପ୍ରିୟତା ହାସଲ କରୁଛି । ଅଜସ୍ର ରୋଜଗାରକରି ଯୋଗିଏ ଟଙ୍କା ସଂଚୟରଖି ପାରୁନଥିବା ମତ୍ସ୍ୟଜୀବୀମାନେ ସଂଚୟକରି ଶିଖିଲେଣି ।

## ଓଡ଼ିଶା ସମୁଦ୍ର ମାଛଧରା ନିୟନ୍ତ୍ରଣ ଆଇନ

ଓଡ଼ିଶା ସମୁଦ୍ରକୂଳରେ ଯାନ୍ତ୍ରିକ ମାଛଧରା ପୋତର କ୍ରମାଗତ ସଂଖ୍ୟା ବୃଦ୍ଧି ଓ ଅବାଧ ମାଛଧରା ଫଳରେ ସମୁଦ୍ରକୁ ଆଶ୍ରାକରି ସାଧାରଣ ନୌକାରେ ମାଛଧରି ଜୀବିକା ନିର୍ବାହ କରୁଥିବା ଅସଂଖ୍ୟ ମତ୍ସ୍ୟଜୀବୀମାନଙ୍କ ସ୍ୱାର୍ଥ ବ୍ୟାହତ ହେଉଛି । ଏହି ସମସ୍ୟାର ସମାଧାନ ନିମିତ୍ତ ସମୁଦ୍ରରେ ମାଛଧରା ପାଇଁ ଯାତାୟତ କରୁଥିବା ପୋତଗୁଡ଼ିକର ନିୟନ୍ତ୍ରଣ ପାଇଁ ଓଡ଼ିଶା ସାମୁଦ୍ରିକ ମାଛଧରା ଆଇନ ଜରିଆରେ ମାଛଧରା ନୌକା ଲାଇସେନ୍ସ ପ୍ରଥା ଚାଲୁ କରାଯାଇଛି ।

ଆଇନର ୧୬୩ ଧାରାର ୧ମ ଉପଧାରା ଅନୁଯାୟୀ ଅଣଯାନ୍ତ୍ରିକ ମାଛଧରା ନୌକା ସମୂହ କୂଳଠାରୁ ୫କିଲୋ ମିଟର ପର୍ଯ୍ୟନ୍ତ ଅବାଧରେ ମାଛଧରା କାର୍ଯ୍ୟ କରିପାରିବେ ଏବଂ ଏହି ନିର୍ଦ୍ଦିଷ୍ଟ ଅଞ୍ଚଳ ମଧ୍ୟରେ କୌଣସି ଯାନ୍ତ୍ରିକ ନୌକା ମାଛଧରା କାର୍ଯ୍ୟ କରିପାରିବେ ନାହିଁ । ଏହାମଧ୍ୟ ଅଗଣିତ ମତ୍ସ୍ୟଜୀବୀମାନଙ୍କ ପାଇଁ ଏକ କଲ୍ୟାଣକର ଯୋଜନା ।

## ଲୁଣିଆ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷ ପାଇଁ ସାହାଯ୍ୟ

ଓଡ଼ିଶା ଉପକୂଳର ଲୁଣିଆ ଅଞ୍ଚଳରେ ଏବଂ ଚିଲିକାହ୍ରଦ ପରିପାର୍ଶ୍ୱରେ ରପ୍ତାନୀଯୋଗ୍ୟ ଚିଙ୍ଗୁଡ଼ି ଚାଷ ମାଧ୍ୟମରେ ଜୀବିକାର୍ଜ୍ଜନ ନିମିତ୍ତ ଆଗ୍ରହୀ ମାଛଚାଷୀମାନଙ୍କୁ ବ୍ୟାଙ୍କ ଋଣ ଓ ରିହାତି ଆକାରରେ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଉଛି । ଏହି ମାଛଚାଷୀମାନଙ୍କର ସେବାପାଇଁ ପୁରୀ ଓ ଗଂଜାମ ଜିଲ୍ଲାକୁ-ନେଇ ପୁରୀଠାରେ ଏବଂ କଟକ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ବାଲେଶ୍ୱରଠାରେ ଦୁଇଟି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ପ୍ରତିଷ୍ଠିତ ହୋଇଛି । ୨୪୯ଜଣ ଚିଙ୍ଗୁଡ଼ିଚାଷୀଙ୍କୁ ଶତକଡ଼ା ୨୫ ଭାଗ ହାରରେ ୯ଲକ୍ଷ ୪୪ ହଜାର ୬୧୪ଟଙ୍କା ବିଭାଗୀୟ ରିହାତି ଦିଆଯାଇଛି । ଏହାଛଡ଼ା ବ୍ୟାଙ୍କ ଋଣ ୪୨ ଲକ୍ଷ ୧୦ ହଜାର ୨୬୩ ଟଙ୍କା ମଂଜୁର କରାଯାଇଛି । ସେଥିରୁ ୨୭ ଲକ୍ଷ ୪୯ ହଜାର ୪୫୧ ଟଙ୍କା ଦିଆସରିଲାଣି । ବର୍ତ୍ତମାନ ଚିଙ୍ଗୁଡ଼ିଚାଷପାଇଁ ୪୦୫.୩୯ ହେକ୍ଟର ପରିମିତ ଅଞ୍ଚଳରେ ଲୁଣିପାଣି ପୋଖରୀ ପ୍ରସ୍ତୁତ ସରିଲାଣି । ଏପର୍ଯ୍ୟନ୍ତ ୬୮୨ ଜଣ ଚିଙ୍ଗୁଡ଼ିଚାଷୀଙ୍କୁ ତାଲିମ ଦିଆସରିଲାଣି । ଏଇ ଚିଙ୍ଗୁଡ଼ିଚାଷରୁ ଅଧିକଲାଭ ମିଳୁଥିବାରୁ ଏଥିପ୍ରତି ଆଗ୍ରହ ପ୍ରକାଶ ପାଉଛି । ଏହି ଯୋଜନା ଅନ୍ତର୍ଗତ ଅଧଏକର ଆୟତନ ପୋଖରୀରୁ ଚାଷୀ ୪ମାସରେ ୪୦ରୁ ୫୦କିଲୋଗ୍ରାମ ବାଗଦା ଚିଙ୍ଗୁଡ଼ି ଉତ୍ପାଦନକରି ୨,୫୦୦ରୁ ୩,୦୦୦ ପର୍ଯ୍ୟନ୍ତ ଟଙ୍କା ଆମଦାନୀ କରିପାରୁଛି । ବର୍ଷକୁ ଦୁଇଥର ଚାଷ କରାଯାଇପାରେ ।

ସମୟ ଆସିଛି । ସୁଯୋଗ ଦ୍ୱାରଦେଶରେ । ଯେଉଁମାନଙ୍କର କଲ୍ୟାଣ ପାଇଁ ଏସମସ୍ତ କାର୍ଯ୍ୟକ୍ରମ, ସେମାନଙ୍କର ନିଷ୍ଠାପର ସଂଯୁକ୍ତି ଉପରେ ସମସ୍ତ ନିର୍ଭରକରେ ଏବଂ ଏଥିପାଇଁ ଲୋଡ଼ା ସେହି ମନ । ମନଥିଲେ ସବୁ ଅନାୟାସେ ହାସଲ କରିହେବ ।

ମତ୍ସ୍ୟ ନିର୍ଦ୍ଦେଶକ, ଓଡିଶା, କଟକ





# ଏକ ଚିରନ୍ତନ ଜ୍ୟୋତି


ସ୍ୱାଧୀନତାର ସେହି ପବିତ୍ର ଜ୍ୟୋତି
ଆମର ବୀର ଦେଶବାସୀଙ୍କ
ସବୁ ଦିନ ପାଇଁ
ତାହା ଆଜି ମଧ୍ୟ କୋଟି କୋଟି
ଭାରତୀୟଙ୍କ ହୃଦୟରେ ପ୍ରେରଣାଦାୟକ
ସମୟରେ ଏକ ଶକ୍ତି ଆଣି ଦେଇ
କେହି କ'ଣ ତାକୁ ଲିଭାଇ ପାରିବ ?
ଏହା ସେହି ଜ୍ୟୋତିଶିଖା
ଯାହା ଆମର ନିର୍ଭୀକ ଦେଶବାସୀଙ୍କୁ ସାହସ ଦେଇଛି ।
ଓ ସ୍ୱପ୍ନ
ଏବଂ ଦିନରେ ଆମକୁ ସ୍ୱାଧୀନ କରାଇଛି ।
ଏହା ସେହି ଦୀପଶିଖା ଯାହା ଆମକୁ
ପ୍ରଗତି ଓ ସମୃଦ୍ଧିର ପଥ ଦେଖାଉଛି
ଏହି ଜ୍ୟୋତି ଦ୍ୱାରା ଆମକୁ ମହାନ୍
ଓ ଆତ୍ମନିର୍ଭରଶୀଳ କରି ଗଢ଼ି ତୋଳିବ ।
ସ୍ୱାଧୀନତାର ଏହି ଚେତନା
ପ୍ରତି ଭାରତୀୟ ଦେଶବାସୀଙ୍କ ହୃଦୟରେ
ସଦା ପ୍ରଜ୍ୱଳିତ ରହୁ ।

# ଓଡ଼ିଶାରେ ହସ୍ତତନ୍ତ ଶିଳ୍ପ

ଶ୍ରୀ ଶ୍ୟାମ ସୁନ୍ଦର ଟେଲଙ୍ଗା

ସ୍ୱର୍ଗୀୟା ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶାର ହସ୍ତତନ୍ତ ଶିଳ୍ପର ଅପୂର୍ବ କୁଶଳତାରେ ଅତି ମୁଗ୍ଧ ହୋଇଥିଲେ । ସେ ତାଙ୍କର ପ୍ରତି ଓଡ଼ିଶା ଭ୍ରମଣ କାଳରେ ଓଡ଼ିଶାର କାର୍ପାସ ଓ ରେଶମ ହାତବୁଣା ଲୁଗା କିଣି ପୃଷ୍ଠପୋଷକତା କରିବା ସଂଗେ ସଂଗେ ଓଡ଼ିଶାର ହସ୍ତତନ୍ତ ବସ୍ତ୍ରର ଉତ୍କର୍ଷତାର ଭୂୟସୀ ପ୍ରଶଂସା କରୁଥିଲେ । ସେ ଅନୁଭବ କରିଥିଲେ ଯେ ଓଡ଼ିଶାର ବୁଣାକାରମାନେହିଁ ପ୍ରକୃତରେ ଶିଳ୍ପୀ । ଆର୍ଥିକଲାଭ ଅପେକ୍ଷା କଳାତ୍ମକ ଉତ୍କର୍ଷତାର ଅଭିବୃଦ୍ଧି ଓଡ଼ିଆ ବୁଣାକାର ମାନଙ୍କର ପ୍ରଧାନ ଲକ୍ଷ୍ୟ । କେନ୍ଦ୍ର ତଥା ରାଜ୍ୟ ସରକାର ଓଡ଼ିଶାର ହସ୍ତତନ୍ତ ଶିଳ୍ପର ଉନ୍ନତି ପାଇଁ ବିହିତ ପ୍ରଚେଷ୍ଟା ଗତ ଷଷ୍ଠ ପଂଚବାର୍ଷିକ ଯୋଜନାକାଳରେ ଓଡ଼ିଶାର ହସ୍ତତନ୍ତ ଶିଳ୍ପରେ ଏକ ବୈପ୍ଳବିକ ଉତ୍‌ଥାନ ଆଣିପାରିଛି ଓ ରାଜ୍ୟ ସରକାରଙ୍କର ନୂତନ ଶିଳ୍ପନୀତିରେ ହସ୍ତତନ୍ତର ବିକାଶ ନିମିତ୍ତ ଅଧିକ ଗୁରୁତ୍ୱ ଦିଆଯାଇଥିବାରୁ ଏହି ଷଷ୍ଠ ଯୋଜନା କାଳ ମଧ୍ୟରେ ବୟନ ଶିଳ୍ପ କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ହୋଇପାରିଛି ।

ଓଡ଼ିଶାରେ ଥିବା ପ୍ରାୟ ୩ଲକ୍ଷ ବୁଣାକାରମାନଙ୍କ ମଧ୍ୟରୁ ୩୭,୫୦୦ ହରିଜନ ଓ ୮,୫୦୦ ଆଦିବାସୀ । ଏମାନଙ୍କ ଭିତରୁ ଅଧିକାଂଶ ନିଜର ତନ୍ତ ଅଭାବରୁ ବଡ଼ବଡ଼ ତନ୍ତୀ ବା ମାଷ୍ଟର ଉଇଭର ମାନଙ୍କର ମଜୁରିଆ ଭାବରେ କାମକରି ଶୋଷିତ ହେଉଥିଲେ । ପୁରୁଣା ଅଚଳ ତନ୍ତ, ପର୍ଯ୍ୟାପ୍ତ ମୂଳଧନର ଅଭାବ, ସୂତା ଯୋଗାଣର ଅବ୍ୟବସ୍ଥା, ପ୍ରସେସିଂ କାରଖାନା ଓ ସୁବିଧାଜନକ ବିକ୍ରୟ ମାଧ୍ୟମର ଅଭାବ ହେତୁ ବୁଣାକାର-ମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ହୋଇପାରିନଥିଲା ।

ଏଣୁ ଷଷ୍ଠ ପଂଚବାର୍ଷିକ ଯୋଜନାକାଳ ମଧ୍ୟରେ ରାଜ୍ୟ ସରକାର ଏହିସବୁ ସମସ୍ୟାର ସମାଧାନ ନିମିତ୍ତ ଅନେକ ଉନ୍ନତି-ମୂଳକ ଯୋଜନା କାର୍ଯ୍ୟକାରୀ କରିଅଛନ୍ତି ।

## ସମବାୟ ପରିସର ସଂପ୍ରସାରଣ

ପଂଚମ ପଂଚବାର୍ଷିକ ଯୋଜନା ଶେଷସୁଦ୍ଧା ୩୦,୦୦୦ ତନ୍ତ ସମବାୟ ପରିସରଭୁକ୍ତ ହୋଇଥିବା ସ୍ଥଳେ ଷଷ୍ଠ ପଂଚବାର୍ଷିକ ଯୋଜନା ଶେଷ ସୁଦ୍ଧା ପ୍ରାୟ ୩୮,୦୦୦ ଅତିରିକ୍ତ ତନ୍ତ ସମବାୟ ପରିସରଭୁକ୍ତ କରାଯାଇ ୭୬,୦୦୦ ବୁଣାକାର ମାନଙ୍କୁ ପ୍ରତ୍ୟକ୍ଷ ଭାବରେ ନିଯୁକ୍ତି ଯୋଗାଇବାପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ନୂତନଭାବେ ସମବାୟ ପରିସରକୁ ଆସିଥିବା ପ୍ରତ୍ୟେକ ବୁଣାକାରଙ୍କୁ ଅଂଶଧନ ସାହାଯ୍ୟ ଆକାରରେ ୧୦୦ ଟଂକା ଓ ଋଣ ଆକାରରେ ୧୦୦ ଟଂକା ଯୋଗାଇ ଦିଆଯାଇଥାଏ । ୧୯୮୦–୮୫ ଆର୍ଥିକ ବର୍ଷ ମଧ୍ୟରେ ୩୮.୩୫୭ ଗୋଟି ନୂତନ ତନ୍ତ ସମବାୟ ଅନ୍ତର୍ଭୁକ୍ତ କରାଯାଇ ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ କରାଯାଇ ପାରିଛି । ଏହି ସମୟ ମଧ୍ୟରେ ଅତିରିକ୍ତ ୭୬,୭୧୪ ଜଣ ବୁଣାକାର ସମବାୟ ପରିସରଭୁକ୍ତ ହୋଇଛନ୍ତି । ସେହିଭଳି ହସ୍ତତନ୍ତ ଉନ୍ନୟନ ନିଗମ ଜରିଆରେ ଷଷ୍ଠ-ପଂଚବାର୍ଷିକ ଯୋଜନାକାଳ ମଧ୍ୟରେ ୭,୬୮୬ ଗୋଟି ତନ୍ତ ନିଗମ ପରିସର ମଧ୍ୟକୁ ଅଣାଯିବ ବୋଲି ଲକ୍ଷ୍ୟ ରଖାଯାଇଥିଲା । ଉକ୍ତ ଯୋଜନାପୂର୍ବୀ ବେଳକୁ ମୋଟ୍ ୭,୭୯୦ ଗୋଟି ତନ୍ତକୁ ନିଗମର ପରିସରଭୁକ୍ତ କରାଯାଇ ପାରିଛି । ଏହି ନିଗମ ରାଜ୍ୟରେ ୧୫,୫୮୦ ଜଣ ବୁଣାକାରଙ୍କୁ ପ୍ରତ୍ୟକ୍ଷ କର୍ମଯୋଗାଇ ଦେବାରେ ସକ୍ଷମ ହୋଇପାରିଛି । ତେଣୁ ଷଷ୍ଠ ଯୋଜନାକାଳ ପୂର୍ତ୍ତୀ ବେଳକୁ ସଂଗଠିତ ଉଦ୍ୟମ ମଧ୍ୟକୁ ୮୫,୩୬୧ ଗୋଟି ତନ୍ତକୁ ଅଣାଯାଇ ପାରିଛି । ଏହା ରାଜ୍ୟର ମୋଟ୍ ତନ୍ତ ସଂଖ୍ୟାର ଶତକଡ଼ା ୮୧'୨୪ ପ୍ରତିଶତକ ଅଟେ ।

## ତନ୍ତ ଆଧୁନିକୀକରଣ ଓ ଅନ୍ୟାନ୍ୟ ସୁବିଧା

ଆମରାଜ୍ୟରେ ପ୍ରାୟ ଶତକଡ଼ା ୮୦ଭାଗ ତନ୍ତ ପୁରାତନ ଓ ଗର୍ତ୍ତତନ୍ତ ଶ୍ରେଣୀଭୁକ୍ତ ହୋଇଥିବା ଯୋଗୁ ବୁଣାକାର ମାନଙ୍କର ଉତ୍ପାଦନ ତଥା ଆୟ ଆଶାନୁରୂପ ବୃଦ୍ଧି ପାଇପାରୁନାହିଁ । ତେଣୁ ଷଷ୍ଠ ଯୋଜନାକାଳ ମଧ୍ୟରେ ୬୫,୯୦୦ ଗୋଟି ତନ୍ତର ଆଧୁନିକୀକରଣ ନିମନ୍ତେ ୬'୫୯ କୋଟି ଟଂକାର ବ୍ୟୟ ଅଟକଳ କରାଯାଇଥିଲା । ଏଥିମଧ୍ୟରୁ ୧୭,୫୦୦ ଗୋଟି ତନ୍ତ ହରିଜନ ମାନଙ୍କପାଇଁ ଉଦ୍ଦିଷ୍ଟ । ଉନ୍ନତ ତନ୍ତ ସରଂଜାମ ଯୋଗାଣ ପାଇଁ ସରକାର ପ୍ରତି ବୁଣାକାର ପିଛା ୧,୦୦୦ ଟଂକା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଦେବାର ବ୍ୟବସ୍ଥା କରିଛନ୍ତି । ଏଥିମଧ୍ୟରୁ ଶତକଡ଼ା ୫୦ଭାଗ ଋଣ ଆକାରରେ ଓ ଆଉ ଶତକଡ଼ା ୫୦ ଭାଗ ସବ୍‌ସିଡ଼ି ଆକାରରେ ଯୋଗାଇ ଦିଆଯାଉଅଛି । କିନ୍ତୁ ହରିଜନ ମାନଙ୍କ କ୍ଷେତ୍ରରେ ଶତକଡ଼ା ୭୫ ଭାଗ ସାହାଯ୍ୟ ଓ ଶତକଡ଼ା ୨୫ ଭାଗ ଋଣ ଆକାରରେ ଦିଆଯାଉଛି । ଏହା ବ୍ୟତୀତ ହରିଜନ ବୁଣାକାର ମାନଙ୍କୁ ଅଗ୍ନି ନିରୋଧ ତନ୍ତଶାଳା ନିର୍ମାଣ କରିବାପାଇଁ ଆର୍ଥିକ ସାହାଯ୍ୟ ଦିଆଯାଉଛି । ତନ୍ତର ଉତ୍ପାଦନ

କ୍ଷମତା ବୃଦ୍ଧି ନିମନ୍ତେ କେତେକ କ୍ଷେତ୍ରରେ ଅନ୍ୟାନ୍ୟ ଯନ୍ତ୍ରପାତି ମାଗଣାରେ ଯୋଗାଇ ଦିଆଯାଉଛି ଏବଂ ତତ୍‌ସଂଗେ ସଂଗେ ଆଉ ଏକ ଯୋଜନା ଅନୁଯାୟୀ ତନ୍ତୁବାୟ ମାନଂକର ଗୃହ ଏବଂ ତନ୍ତ ଶାଳାକୁ ବିଦ୍ୟୁତ୍ ଯୋଗାଣ ନିମନ୍ତେ ସରକାରଂକ ପକ୍ଷରୁ ଆର୍ଥିକ ସହାୟତା କରାଯାଉଛି । ଏହି ଯୋଜନା କାର୍ଯ୍ୟକାରୀ ହେବା ଫଳରେ ବୁଣାକାରମାନେ ରାତ୍ରୀରେ ଅଧିକ ସମୟ ପର୍ଯ୍ୟନ୍ତ କାମକରି ପାରୁଛନ୍ତି ଏବଂ ବସ୍ତ୍ରର ଗୁଣାତ୍ମକମାନ ମଧ୍ୟ ବୃଦ୍ଧି ପାଇଛି । ଷଷ୍ଠ-ପଂଚବାର୍ଷିକ ପୂର୍ବା ବେଳକୁ ୬'୫୮ କୋଟି ଟଂକା ବ୍ୟୟରେ ୬୦,୦୬୯ ଗୋଟି ତନ୍ତକୁ ଆଧୁନିକୀକରଣ କରାହୋଇଅଛି ଓ ୪,୫୦୬ ଗୋଟି ତନ୍ତଶାଳାକୁ ବିଦ୍ୟୁତ୍ ସଂଯୋଗ କରାଯାଇପାରିଛି ।

## ବସ୍ତ୍ର ଉତ୍ପାଦନ

ତନ୍ତ ଅନ୍ତର୍ଭୁକ୍ତିକରଣ ଓ ତନ୍ତ ଆଧୁନିକୀକରଣ ଏହି ଦୁଇଟି ଯୋଜନାର କୃତି ଷଷ୍ଠ-ପଂଚବାର୍ଷିକ ଯୋଜନାରେ ବିଶେଷ ଭାବରେ ପରିଲକ୍ଷିତ ହୋଇଛି । ଏହାଦ୍ୱାରା ବସ୍ତ୍ର ଉତ୍ପାଦନ କ୍ଷେତ୍ରରେ ଆମେ କିଛିଟା ଆତ୍ମନିର୍ଭରଶୀଳ ହୋଇପାରିଛେ । ସମବାୟ ପରିସର ମଧ୍ୟରେ ୬୦୦'୦୦ ଲକ୍ଷ ବର୍ଗମିଟର ବସ୍ତ୍ର ଷଷ୍ଠ-ପଂଚବାର୍ଷିକ ଯୋଜନାକାଳ ମଧ୍ୟରେ ଉତ୍ପାଦିତ ହେବାପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଷଷ୍ଠ-ଯୋଜନା ଶେଷସୁଦ୍ଧା ୬୩୭'୦୦ ଲକ୍ଷ ବର୍ଗମିଟରରେ ଉତ୍ପାଦନର ରେକର୍ଡ ସୃଷ୍ଟି କରାଯାଇପାରିଛି । ସେହିପରି ହସ୍ତତନ୍ତ ଉନ୍ନୟନ ନିଗମ ଜରିଆରେ ଷଷ୍ଠ ଯୋଜନା ଶେଷସୁଧା ୧୬୦'୦୦ ଲକ୍ଷ ବର୍ଗମିଟର ବସ୍ତ୍ର ଉତ୍ପାଦନ ହେବାପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା ଓ ଯୋଜନା ଶେଷସୁଧା ୧୦୧'୩୩ ଲକ୍ଷ ବର୍ଗମିଟର ବସ୍ତ୍ର ଉତ୍ପାଦିତ ହୋଇପାରିଲା । ତେଣୁ ସଂଗଠିତ ପରିସର ମାଧ୍ୟମରେ ୭୩୮'୩୩ ଲକ୍ଷ ବର୍ଗମିଟର ଲୁଗା ଉତ୍ପାଦନ କରାଯାଇ ସାଧାରଣ ତଥା ଗରିବଲୋକ ମାନଂକର ଚାହିଦା ମେଂଟଣ କରିବାକୁ ସକ୍ଷମ ହୋଇପାରିଛି ।

## ଜନତା ବସ୍ତ୍ର ଉତ୍ପାଦନ

୧୯୭୬-୭୭ ମସିହାଠାରୁ କାର୍ଯ୍ୟକାରୀ ହେଉଥିବା କେନ୍ଦ୍ର-ସରକାରଂକ ପରିକଳ୍ପିତ ଜନତା ବସ୍ତ୍ର ଉତ୍ପାଦନ ଯୋଜନା ଉପରେ ଗରିବ ଖଟିଖିଆ ଓ ଦୁର୍ବଳ ଶ୍ରେଣୀ ଲୋକଂକର ଚାହିଦା ମେଂଟାଣ ପାଇଁ ତଥା ବୁଣାକାର ମାନଂକର କର୍ମଯୋଗାଣରେ ସହାୟକ ହେବାପାଇଁ ରାଜ୍ୟସରକାର ଷଷ୍ଠ-ପଂଚବାର୍ଷିକ ଯୋଜନାକାଳ ମଧ୍ୟରେ ଅଧିକ ଗୁରୁତ୍ୱ ଦେଇଥିଲେ । ରାଜ୍ୟ ତନ୍ତୁବାୟ ସହଯୋଗ ସମିତି ଓ ରାଜ୍ୟ ହସ୍ତତନ୍ତ ଉନ୍ନୟନ ନିଗମ ମାଧ୍ୟମରେ ଏ ଯୋଜନା କାର୍ଯ୍ୟକାରି କରାଯାଇ ପ୍ରାୟ ୧୫,୯୧୬ ଗୋଟି ତନ୍ତ ଏହି ଯୋଜନା ପରିସରଭୁକ୍ତ ହୋଇଛି । ଷଷ୍ଠ ଯୋଜନାକାଳ ମଧ୍ୟରେ ହସ୍ତତନ୍ତ ନିଗମ ଓ ସମବାୟ ସମିତି ଉଦ୍ୟୋଗରେ ୧୧୦୩'୬୨ ଲକ୍ଷ ବର୍ଗମିଟର ଜନତା ବସ୍ତ୍ର ଉତ୍ପାଦିତ ହୋଇପାରିଛି । ଉକ୍ତ ସମୟ ମଧ୍ୟରେ ଓଡ଼ିଶାର ପୁରପଲ୍ଲୀରେ ବାସକରୁଥିବା ସମାଜର ଦୁର୍ବଳ ଶ୍ରେଣୀରଲୋକ ମାନଂକ ମଧ୍ୟରେ ଏହା ବିକ୍ରୟ କରାଯାଉଅଛି । ଏହି ଲୁଗା ହସ୍ତତନ୍ତ ନିଗମ ଓ ରାଜ୍ୟ ତନ୍ତୁବାୟ ସହଯୋଗ ସମିତିର ନିଜ ବିକ୍ରୟ କେନ୍ଦ୍ରମାନଂକ ଛଡ଼ା ଖାଉଟି ସମବାୟ ସମିତି ଓ ଆଂଚଳିକ ବାଣିଜ୍ୟ ସମବାୟ ସମିତିମାନଂକ ଜରିଆରେ ବି[illegible] କରାଯାଉଅଛି । ଏହାକୁ ଅଧିକରୁ ଅଧିକତର ବ୍ୟାପକ କରି[illegible] ନିମିତ୍ତ ସରକାରୀ ଅନୁମୋଦିତ ସୁଲଭ ଦୋକାନ ମାନଂକରେ [illegible] ସ୍ୱୀକୃତିପ୍ରାପ୍ତ ବିକ୍ରେତା ମାନଂକ ଜରିଆରେ ବିକ୍ରୀ କରି[illegible] ବ୍ୟବସ୍ଥା କରାଯାଉଅଛି ।

## ରିଜର୍ଭ ବ୍ୟାଙ୍କ ଋଣ

ରାଜ୍ୟର ପ୍ରାଥମିକ ସହଯୋଗ ସମିତି ମାନଂକୁ ସେମାନଂକର କାର୍ଯ୍ୟକାରି ମୂଳଧନ କେନ୍ଦ୍ର ସମବାୟ ବ୍ୟା[illegible] ଜରିଆରେ ରିଜର୍ଭ ବ୍ୟାଙ୍କ ଯୋଗାଇ ଦିଅନ୍ତି । ୧୯୭୯-[illegible] ଆର୍ଥିକ ବର୍ଷରେ ରିଜର୍ଭ ବ୍ୟାଙ୍କ କ୍ୟାସ୍ କ୍ରେଡ଼ିଟ୍ ସୀମା ୨କୋଟି [illegible] ୨୧ ଲକ୍ଷ ଟଂକାରେ ସିମିତ ଥିବାସ୍ଥଳେ ୧୯୮୪-୮୫ ବର୍ଷ [illegible] ଶେଷସୁଧା ଏହା ୧୧'୪୩ କୋଟି ଟଂକାକୁ ବୃଦ୍ଧି ପାଇଅଛି । ତଥାପି ଏହି ସୀମା ଅଧିକ ବୃଦ୍ଧିପାଇଁ ବିଶେଷ ଯତ୍ନନିଆଯାଉଅଛି ।

## ସରକାରୀ ରିହାତି

ହସ୍ତତନ୍ତ ବସ୍ତ୍ରକୁ ଅଧିକରୁ ଅଧିକ ଲୋକପ୍ରିୟ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ବର୍ଷର ବିଭିନ୍ନ ପର୍ବପର୍ବାଣୀ ମାନଙ୍କରେ ରିବେଟ୍ ଦିଆଯାଇଥାଏ । ବିକ୍ରୀ ସମୟରେ ଗ୍ରାହକ ମାନ୍[illegible] ଯେଉଁ ରିହାତି (ଶତକଡ଼ା ୨୦ ଭାଗ) ଦିଆଯାଇଥାଏ ସେ ଟଙ୍କା ପରେ କେନ୍ଦ୍ର ତଥା ରାଜ୍ୟ ସରକାର ଉଭୟେ ସମାନୁପାତରେ ଭରଣା କରିଥାନ୍ତି । ପଞ୍ଚମ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ରିବେଟ୍ ପ୍ରକଳ୍ପରେ ୪୫'୦୦ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଉଥିବା ସ୍ଥଳେ ଷଷ୍ଠ ଯୋଜନାକାଳ ମଧ୍ୟରେ କେବଳ ରାଜ୍ୟ ସରକାର ୪୯'୮୬ ଲକ୍ଷ ଟଙ୍କା ଭରଣା କରିଛନ୍ତି । ଏହା ବ୍ୟତୀତ କେନ୍ଦ୍ର ସରକାରଙ୍କ ଠାରୁ ୩୨୬'୩୯ ଲକ୍ଷ ଟଙ୍କା ଭରଣା ମିଳିଛି ।

## ପ୍ରୋସେସିଂ

ପ୍ରାଥମିକ ତନ୍ତୁବାୟ ସମିତି ମାନଙ୍କୁ ସୂତା ଯୋଗାଣ ଓ ସେମାନଙ୍କର ଉତ୍ପାଦିତ ବସ୍ତ୍ରର ଉପଯୁକ୍ତ ବିକ୍ରୟ ନିମିତ୍ତ ଓଡ଼ିଶା ରାଜ୍ୟ ତନ୍ତୁବାୟ ସହଯୋଗ ସମିତି ପ୍ରାଥମିକ ତନ୍ତୁବାୟ ମାନଙ୍କ ଶୀର୍ଷ ଅନୁଷ୍ଠାନ ରୂପେ କାର୍ଯ୍ୟକରେ । ଅନୁରୂପ ଲକ୍ଷ୍ୟ ନେଇ ରାଜ୍ୟ ହସ୍ତତନ୍ତ ଉନ୍ନୟନ ନିଗମ ସମବାୟ ପରିସର ବାହାରେ ଥିବା ବୁଣାକାରମାନଙ୍କୁ ସଙ୍ଗଠିତ କରି ସେମାନଙ୍କ ଦ୍ୱାରା ଉତ୍ପାଦିତ ବସ୍ତ୍ରକୁ ହସ୍ତତନ୍ତ ଉନ୍ନୟନ ନିଗମ ବିକ୍ରୀ କରିଥାଏ । ଏହି ଉଭୟ ଅନୁଷ୍ଠାନମାନଙ୍କର ରାଜ୍ୟ ଭିତରେ ତଥା ବାହାରେ ୧୬୩ ଗୋଟି ବିକ୍ରୟ କେନ୍ଦ୍ର ରହିଅଛି । ଷଷ୍ଠ ଯୋଜନାର ଶେଷ ବର୍ଷରେ ଏମାନେ ମୋଟ୍ ୭୫୮୭'୮୭ ଲକ୍ଷ ଟଙ୍କାର ହସ୍ତତନ୍ତ ବସ୍ତ୍ର ବିକ୍ରୟ କରି ପାରିଛନ୍ତି ।

ହସ୍ତତନ୍ତ ବସ୍ତ୍ରକୁ ଅଧିକ ସୁନ୍ଦର ତଥା ଆକର୍ଷଣୀୟ କରିବା ପାଇଁ ଉତ୍ତମ ପ୍ରୋସେସିଂର ଆବଶ୍ୟକତା ଅନୁଭବ କରି ଷଷ୍ଠ ଯୋଜନା କାଳରେ ୧'୨୩ ଲକ୍ଷ ଟଙ୍କା ଖର୍ଚ୍ଚରେ କଟକ ଜିଲ୍ଲାର ଜଗତପୁର ଶିଳ୍ପାଞ୍ଚଳରେ ଗୋଟିଏ ସମବାୟ ଭିତ୍ତିକ ପ୍ରୋସେସିଂ କାରଖାନା ପ୍ରତିଷ୍ଠା କରାଯାଇଅଛି । ଏହାଛଡ଼ା ଷଷ୍ଠ ଯୋଜନାକାଳରେ କେନ୍ଦ୍ର ସରକାରଙ୍କ ଠାରୁ ୭୪'୯୮ ଲକ୍ଷ

ଟଙ୍କା ଅନୁଦାନ ପାଇ ରାଜ୍ୟ ହସ୍ତତନ୍ତ ସମବାୟ ସମିତି ପକ୍ଷରୁ ପୁରୀ ଜିଲ୍ଲାର ପିଚୁକୁଳିଠାରେ ଓ କଟକ ଜିଲ୍ଲାର ଆଠଗଡ଼ ନିକଟସ୍ଥ ଦୋରଢଠାରେ ଦୁଇଟି ବୃହତ୍ ରଙ୍ଗ କାରଖାନାର ନିର୍ମାଣ କାର୍ଯ୍ୟ ହାତକୁ ନେଇଅଛନ୍ତି । ଏହି ଦୁଇଟି ପ୍ରକଳ୍ପ ଅଳ୍ପ ମାସ ମଧ୍ୟରେ ଉତ୍ପାଦନକ୍ଷମ ହେବ । ଏହା ବ୍ୟତୀତ ଉକ୍ତ ଅନୁଦାନ ବିନିଯୋଗ କରି ଆଉ ୬ ଗୋଟି କ୍ଷୁଦ୍ର ଧରଣର ସୂତା ରଙ୍ଗ କାରଖାନା ସ୍ଥାପନ କରାଯାଇଅଛି ଓ ଅନ୍ୟ ୬ ଗୋଟି ନୂତନ ଓ ଦୁଇଟି ପୁରାତନ କାରଖାନାର ସଂପ୍ରସାରଣ କାର୍ଯ୍ୟ ହାତକୁ ନିଆଯାଇଅଛି ।

## ହରିଜନ ବୁଣାକାରମାନଙ୍କ ବିକାଶ ଯୋଜନା

ଆମ ରାଜ୍ୟରେ ୩୫,୦୦୦ ହରିଜନ ବୁଣାକାର ପରିବାରଙ୍କର ଆର୍ଥିକ ବିକାଶ ନିମନ୍ତେ ଓଡ଼ିଶା ରାଜ୍ୟ ସରକାର କେତେକ ବିଶେଷ ଯୋଜନା କରିଛନ୍ତି । କେବଳ ହରିଜନମାନଙ୍କ ପାଇଁ ଉଦ୍ଦିଷ୍ଟ ସମବାୟ ସମିତି ଜରିଆରେ ୧୫,୦୦୦ ଗୋଟି ବୁଣାକାର ପରିବାରକୁ ଅନ୍ତର୍ଭୁକ୍ତ କରିବା ପାଇଁ ଯୋଜନା ହୋଇଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ମୋଟ୍ ୨୧,୬୪୦ ବୁଣାକାର ଏହି ଯୋଜନାର ପରିସରଭୁକ୍ତ କରାଯାଉଛି । ୧୮.୯୩୫ ଗୋଟି ତନ୍ତ ସଙ୍ଗଠିତ ପରିସରଭୁକ୍ତ କରାଯାଉଛି । ସେଥିମଧ୍ୟରୁ ୧୫,୬୬୫ ଗୋଟି ତନ୍ତକୁ ମଧ୍ୟ ଆଧୁନିକୀକରଣ କରାଯାଇଅଛି । ଏହି ଯୋଜନା ଫଳରେ ହରିଜନ ବୁଣାକାରମାନଙ୍କୁ କର୍ମ ଯୋଗାଣ ସଙ୍ଗେ ସଙ୍ଗେ ନିୟମିତ ଆୟ ପାଇବାକୁ ସକ୍ଷମ ହୋଇଛନ୍ତି ।

## ଆଦିବାସୀ ଅଞ୍ଚଳର ଉତ୍ପାଦନ ତଥା ତାଲିମ କେନ୍ଦ୍ର

ଆଦିବାସୀ ଅଞ୍ଚଳରେ ଉପଯୁକ୍ତ ତାଲିମ ତଥା ଶିକ୍ଷା ଅଭାବରୁ ବୁଣାକାରମାନଙ୍କର ଉନ୍ନତି ହୋଇ ପାରିନଥିଲା । ପଞ୍ଚମ ପଞ୍ଚବାର୍ଷିକ ଯୋଜନାକାଳ ମଧ୍ୟରେ କୋରାପୁଟ ଜିଲ୍ଲାର ପଟୁଆଠାରେ ଗୋଟିଏ ଉତ୍ପାଦନ ତଥା ତାଲିମ କେନ୍ଦ୍ର ସ୍ଥାପନ କରାଯାଇଥିଲା କିନ୍ତୁ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ୫ ଗୋଟି ତାଲିମ କେନ୍ଦ୍ର ମଧ୍ୟରୁ କଳାହାଣ୍ଡି ଜିଲ୍ଲାର ବଗଡ଼ ଓ ବାଲେଶ୍ୱର ଜିଲ୍ଲାର ନୀଳଗିରି ନିକଟସ୍ଥ ସୁଜନପୁରଠାରେ ସ୍ଥାପନ କରାଯାଇ ବୁଣାକାରମାନଙ୍କୁ ତାଲିମ ଦିଆଯାଉଅଛି ଓ ଅନ୍ୟ ୩ ଗୋଟି ଯଥା ମୟୁରଭଞ୍ଜ ଜିଲ୍ଲାର ବିଂଝୁଆ ଓ ଓଅଣ୍ଡାରୀ ଏବଂ ସୁନ୍ଦରଗଡ଼ ଜିଲ୍ଲାର କିରେଇଠାରେ ଗୋଟିଏ କେନ୍ଦ୍ର ସ୍ଥାପନ କରାଯିବା ପାଇଁ ଗୃହ ନିର୍ମାଣ କାର୍ଯ୍ୟ ଚାଲିଛି । ଏଥିନିମିତ୍ତ ରାଜ୍ୟ ସରକାର ମୋଟ୍ ୬·୦୦ ଲକ୍ଷ ଟଙ୍କା ଅନୁଦାନ ଦେଇଅଛନ୍ତି । ପ୍ରତି କେନ୍ଦ୍ରରେ ବାର୍ଷିକ ୬୦ ଜଣ ବୁଣାକାର ମାନଙ୍କୁ ତାଲିମ୍ ଦେବା ସଙ୍ଗେ ସଙ୍ଗେ ତାଙ୍କ ଦ୍ୱାରା ଉତ୍ପାଦିତ ବସ୍ତ୍ରକୁ ବିକ୍ରୟ କରାଯିବାର ସୁବନ୍ଦୋବସ୍ତ କରାଯାଇଅଛି । ଉତ୍ପାଦନ ତଥା ତାଲିମ୍ ପାଇବାସମୟରେ ବୁଣିବା ମଜୁରୀ ସହିତ ମାସକୁ ୧୦୦ ଟଙ୍କା ବୃତ୍ତି ମଧ୍ୟ ବୁଣାକାର ମାନଙ୍କୁ ଦିଆଯାଇଥାଏ ।

## ଗ୍ରାମ୍ୟ ଦରିଦ୍ରମାନଙ୍କ ଅର୍ଥନୈତିକ ଅଭ୍ୟୁଥାନ କାର୍ଯ୍ୟକ୍ରମ

ଦରିଦ୍ରତମ ବୁଣାକାରମାନଙ୍କୁ ସେମାନଙ୍କର ଇଚ୍ଛାନୁଯାୟୀ ଏହି କାର୍ଯ୍ୟକ୍ରମ ଜରିଆରେ ହସ୍ତତନ୍ତ ତାଲିମ୍ ଦିଆଯାଇଥାଏ ଓ ତାଲିମ ପରେ ସେମାନଙ୍କୁ ଏହି ବୃତ୍ତିରେ ଅଭ୍ୟୁଥାନ କରାଯାଇଥାଏ । ଏଥି ପାଇଁ ପରିବାର ପ୍ରତି ମୋଟ୍ ୨,୩୩୬ ଟଙ୍କାରୁ ୩,୦୦୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଥାଏ । ଷଷ୍ଠ ଯୋଜନାକାଳମଧ୍ୟରେ ଚିହ୍ନଟ କରାଯାଇଥିବା ଦରିଦ୍ରତମ ବ୍ୟକ୍ତିଙ୍କ ମଧ୍ୟରୁ ତାଲିମ୍ ଦିଆଯାଇ ୭,୯୨୬ ଜଣଙ୍କୁ ପୂର୍ଣ୍ଣମାତ୍ରାରେ ଅଭ୍ୟୁଥାନ କରାଯାଇଅଛି । ଏଥିପାଇଁ ଏ ବାବଦରେ ୧୮୫ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଅଛି ।

## ସମବାୟ ପରିସରଭୁକ୍ତ ସୂତାକଳ

ହସ୍ତତନ୍ତ ବସ୍ତ୍ରର ମୁଖ୍ୟ କଞ୍ଚାମାଲ କାର୍ପାସ । ଏହା ଏକ କୃଷିଭିତ୍ତିକ ଶିଳ୍ପ ଅଟେ । ପଞ୍ଚମ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ଓଡ଼ିଶାରେ ୨ ଗୋଟି ସୂତାକଳ ସମବାୟ ପରିସର ମଧ୍ୟରେ ଉତ୍ପାଦନ କରିଥିଲା । ଏହି ଦୁଇଟି ଯଥାକ୍ରମେ ସମ୍ବଲପୁର ଜିଲ୍ଲାର ବରଗଡ଼ ନିକଟସ୍ଥ ତୋରା ଓ ଢେଙ୍କାନାଳ ଜିଲ୍ଲାର ବରଗଡ଼ ନିକଟସ୍ଥ ତୋରା ଓ ଢେଙ୍କାନାଳ ଜିଲ୍ଲାର ଗୋବିନ୍ଦପୁର ଠାରେ ଅବସ୍ଥିତ । ଏହି ଦୁଇଟି ସୂତାକଳରେ ମୋଟ୍ ୮୪·୦୦ ଲକ୍ଷ କେ. ଜି. ସୂତା ଉତ୍ପାଦିତ ହେଉଥିବା ସ୍ଥଳେ ହସ୍ତତନ୍ତ ଓ କଳତନ୍ତ ଶିଳ୍ପ ପାଇଁ ୪୫୨·୦୦ ଲକ୍ଷ କିଲୋଗ୍ରାମର ସୂତା ଆବଶ୍ୟକ ଦୃଷ୍ଟେ ରାଜ୍ୟ ସରକାର ଏହି ପରି ଏକ ଗୁରୁତ୍ୱପୂର୍ଣ୍ଣ ବସ୍ତ୍ରଶିଳ୍ପର କଞ୍ଚାମାଲର ଚାହିଦା ମେଣ୍ଟାଇବା ପାଇଁ ଓଡ଼ିଶାରେ ଆଉ ଅଧିକ ୭ ଗୋଟି ସମବାୟ ସୂତାକଳ ସ୍ଥାପନ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ଷଷ୍ଠ ଯୋଜନା ଶେଷ ସୁଦ୍ଧା ଅଧିକ ଚାରିଗୋଟି ସୂତାକଳ ମୋଟ୍ ୧,୫୫,୦୦୦ ଗୋଟି ତାକୁଡ଼ିକୁ ନେଇ ଉତ୍ପାଦନକ୍ଷମ ହୋଇଅଛି ଏବଂ ୧ ଗୋଟି ସୂତାକଳର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ଅବଶିଷ୍ଟ ୨ ଗୋଟି ସୂତାକଳର କାର୍ଯ୍ୟ ସପ୍ତମ ଯୋଜନା କାଳରେ ହାତକୁ ନିଆଯିବାର ଯୋଜନା କରାଯାଉଅଛି ।

କଳାତ୍ମକ ବିକାଶ ସହିତ ସାମାଜିକ ତଥା ଅର୍ଥନୈତିକ ଉନ୍ନତି ପାଇଁ ବସ୍ତୁତଃ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକ୍ରମ ଅତି ଗୁରୁତ୍ୱପୂର୍ଣ୍ଣ, ଏହା କହିବା ନିଷ୍ପ୍ରୟୋଜନ । ଓଡ଼ିଶାର ହସ୍ତତନ୍ତର ହୃତ ଗୌରବକୁ ଫେରାଇ ଆଣିବା ଦିଗରେ ରାଜ୍ୟ ସରକାରଙ୍କର ପ୍ରଚେଷ୍ଟାର ସଫଳ ରୂପାୟନ ମୋଟାମୋଟି ଭାବରେ ହୋଇପାରିଛି ଏହା ଅସ୍ୱୀକାର କରି ହେବ ନାହିଁ । ସାଙ୍ଗଠନିକ ଓ ବିଭିନ୍ନ ପ୍ରକାର ଅସୁବିଧା ତଥା ପୁରାତନ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ କରି ଏହି ବୈପ୍ଳବିକ ଗତି ଭବିଷ୍ୟତରେ ହସ୍ତତନ୍ତ ଶିଳ୍ପକୁ ଗୌରବର ଶୀର୍ଷରେ ପହଞ୍ଚାଇ ପାରିବ ଏହା ଆମ୍ଭମାନଙ୍କର ଆଶା ।

# ଓଡ଼ିଶାରେ କୃଷି ଗବେଷଣା ଓ କାର୍ଯ୍ୟକ୍ରମ

ଡକ୍‌ଟର ବିଭୂତି ଭୂଷଣ ରଥ

ଗବେଷଣା ହିଁ ଉଦ୍ଭାବନର ମାଧ୍ୟମ ଓ ସକଳ ସମାଧାନର ପନ୍ଥା । ବିଜ୍ଞାନର ବିକାଶ ଗବେଷଣା ଉପରେ ନିର୍ଭରଶୀଳ । ବିଜ୍ଞାନର ଯେଉଁ ବିଭାଗରେ ଯେତେ ଗବେଷଣା ହୋଇଛି ତାହା ସେତେ ଉନ୍ନତ । ପଦାର୍ଥ ବିଦ୍ୟା, ରସାୟନ ଶାସ୍ତ୍ର ଆଦି ବହୁ ବିଭାଗରେ ବହୁଦିନୁ ଗବେଷଣା ଚାଲିଥିବାରୁ ମଣିଷ ଆଜି ଚନ୍ଦ୍ରଲୋକରେ ପହଞ୍ଚି ପାରିଛି ବା ପରମାଣୁ ବୋମା ବିସ୍ଫୋରଣ ଆବିଷ୍କାରରେ ମଣିଷ ସମାଜ ଆତଙ୍କିତ ହୋଇ ଉଠିଛି । କୃଷି ବିଜ୍ଞାନ, ପଶୁଚିକିତ୍ସା ବିଜ୍ଞାନ ପରି ଜୈବିକ ବିଜ୍ଞାନ ଗବେଷଣା ପ୍ରତି ବହୁଦିନ ଧରି ବିଶେଷ ଧ୍ୟାନ ଦିଆ ନଗଲା ଫଳରେ ଆମ ଖାଦ୍ୟ ସମସ୍ୟାର ଏପର୍ଯ୍ୟନ୍ତ ସମାଧାନ ହୋଇ ପାରିନାହିଁ । ମାତ୍ର ଗତ କେତେ ବର୍ଷ ମଧ୍ୟରେ ପରିସ୍ଥିତିର ପରିବର୍ତ୍ତନ ଘଟୁଥିବାର ଦେଖା ଯାଉଛି ।

କୃଷି ଗବେଷଣାରେ ଗୁରୁତ୍ୱ ଦେବା ଯୁକ୍ତରାଷ୍ଟ୍ର ଆମେରିକା ଠାରୁ ଆରମ୍ଭ । ୧୮୬୨ ମସିହାରୁ ମରିଲ ଆଇନ ବଳରେ ଆମେରିକାରେ ଲାଣ୍ଡଗ୍ରାଣ୍ଟ କଲେଜ ବା କୃଷି ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହେଲା । ଏହାଦ୍ୱାରା କୃଷି ପରି ଏକ ଅବହେଳିତ ବିଦ୍ୟାକୁ ଛାତ୍ରମାନଙ୍କୁ ପଢ଼ାଗଲା । କ୍ରମେ କୃଷି ସଂପର୍କରେ ନୂଆ ନୂଆ ତତ୍ୱ ଆବିଷ୍କାର କରିବା ପାଇଁ ୧୮୮୭ରେ ହ୍ୟାଚ୍ ଆଇନ ବଳରେ ଏହି ବିଶ୍ୱବିଦ୍ୟାଳୟମାନଙ୍କରେ କୃଷି ଗବେଷଣା ପାଇଁ ଅର୍ଥ ମଞ୍ଜୁର କରାଗଲା । ଗବେଷଣାରୁ ଲବ୍ଧ ନୂଆ ନୂଆ ତତ୍ତ୍ୱମାନଙ୍କୁ କୃଷି ଛାତ୍ରମାନଙ୍କୁ ପଢ଼ାଇବା ସଙ୍ଗେ ସଙ୍ଗେ କୃଷି କ୍ଷେତ୍ରରେ କାମ କରୁଥିବା ଚାଷୀମାନଙ୍କୁ ଜଣାଇବା ପାଇଁ ସଂପ୍ରସାରଣ ଶିକ୍ଷା କାର୍ଯ୍ୟକ୍ରମ ପାଇଁ ୧୯୧୨ରେ ସ୍ମିଥ୍ ଲିଭର ଆଇନ ବଳରେ ଅର୍ଥ ଯୋଗାଇ ଦିଆଗଲା ।

ଭାରତରେ କୃଷି ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହେବାରେ ଶିକ୍ଷାଦାନ, ଗବେଷଣା ଓ ସଂପ୍ରସାରଣ, ଏ ତିନିଟି ଯାକ କାର୍ଯ୍ୟକ୍ରମ ଏକତ୍ର ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇ କାର୍ଯ୍ୟ ଆରମ୍ଭ କଲେ । ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ମଧ୍ୟ ଏ ତିନିଟି ଯାକ ଅଙ୍ଗ ସମତାଳରେ ଚାଲିଛନ୍ତି । କୃଷି କଲେଜ, ପଶୁଚିକିତ୍ସା କଲେଜ, କୃଷି ଯାନ୍ତ୍ରିକ କଲେଜ, ମୌଳିକ ବିଜ୍ଞାନ କଲେଜ ଏବଂ ଏବେ ଗଢ଼ି ଉଠୁଥିବା ଇଂଜିନିୟରିଂ କଲେଜ, ହୋମ ସାଇନ୍‌ସ କଲେଜ, ଫିସରିଜ କଲେଜ ଆଦି ନାନା କଲେଜରେ ହଜାର ହଜାର ଛାତ୍ରଛାତ୍ରୀଙ୍କୁ ଶିକ୍ଷା ତଥା ଡିଗ୍ରୀ ଦିଆ ଚାଲିଛି । ଏକ ସ୍ୱତନ୍ତ୍ର ଅଧ୍ୟକ୍ଷଙ୍କ ଅଧିନାୟକତ୍ୱରେ କୃଷି ଓ ତତ୍ ସଂପର୍କୀୟ ବିଷୟମାନଙ୍କରେ ଭୁବନେଶ୍ୱର ଛଡ଼ା ଓଡ଼ିଶାର ପ୍ରାୟ ସମସ୍ତ ଜିଲ୍ଲାରେ କୃଷିର ବିଭିନ୍ନ ବିଭାଗରେ ଗବେଷଣା ଚାଲିଛି । ସେହିପରି ଏକ ସ୍ୱତନ୍ତ୍ର ଅଧ୍ୟକ୍ଷଙ୍କ ଜରିଆରେ କୃଷି ଓ ଆନୁସଂଗିକ ବିଷୟମାନଙ୍କରେ ସଂପ୍ରସାରଣ ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ରହିଛି ।

କୃଷିର ବିଭିନ୍ନ ବିଭାଗରେ ଗବେଷଣାମାନ ଅହରହ ଚାଲିଛି । ଧାନ, ଗହମ, ମକା, ମାଣ୍ଡିଆ ଆଦି ଖାଦ୍ୟ ଶସ୍ୟ, ଚିନାବାଦାମ, ସୋରିଷ ଆଦି ତୈଳବୀଜ, ମୁଗ, ବିରି, ବୁଟ, ହରଡ ଆଦି ଡାଲି ଜାତୀୟ ଖାଦ୍ୟ, ଆଳୁ ବାଇଗଣ ଆଦି ଯାବତୀୟ ପନିପରିବା ତଥା ଆମ୍ବ, ନଡ଼ିଆ ଠାରୁ ଆରମ୍ଭ କରି ସେଓ, ଅଙ୍ଗୁର ପର୍ଯ୍ୟନ୍ତ ସମସ୍ତ ଫଳ ଇତ୍ୟାଦି ଯାହା ଆମେ କୃଷି ସଂପର୍କୀୟ ଗଛଲତା ଦେଖୁଥାଉଁ, ସେ ସମସ୍ତଙ୍କର ଅଧିକ ଅମଳକ୍ଷମ ବିହନ କିସମ ଆବିଷ୍କାର କରିବା ବୈଜ୍ଞାନିକମାନଙ୍କର ମୁଖ୍ୟ ଗବେଷଣାର ବିଷୟ । ମାଟିକୁ ଚାହିଁ କେଉଁ ଫସଲରେ କେତେ ସାର ପଡ଼ିବା ଦରକାର ତାହା ନିର୍ଣ୍ଣୟ କରିବା ଅନ୍ୟ ଏକ ମୁଖ୍ୟ କାର୍ଯ୍ୟ । ଫସଲର ରୋଗ ପୋକ ଏବଂ ତାହାର ନିରାକରଣ କୃଷି ଗବେଷଣାର ଅନ୍ୟ ଏକ ବିଭାଗ । ଫସଲ ଉତ୍ପାଦାନ, ଅମଳର ସହଜ ପନ୍ଥା, ଅମଳ ପରେ ରକ୍ଷଣାବେକ୍ଷଣର ଉପାୟ ନିର୍ଦ୍ଧାରଣ ମଧ୍ୟ ଗବେଷଣାର ବିଷୟ । ଫସଲରେ ଖର୍ଚ୍ଚ, ଚାଷୀର ପରିଶ୍ରମର ମୂଲ୍ୟ, ଖାଉଟୀମାନଙ୍କର କ୍ରୟ ଶକ୍ତି ଆଦି ବିଚାର କରି କୃଷିଜାତ ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣ ମଧ୍ୟ କୃଷି ଗବେଷଣାର ଏକ ମୁଖ୍ୟ ବିଭାଗ ।

ସେହିପରି ପଶୁପାଳନ ଓ ପଶୁଚିକିତ୍ସା, କୃଷି ଯନ୍ତ୍ରପାତି, ମୃତ୍ତିକା ସଂରକ୍ଷଣ, ମତ୍ସ୍ୟ ଓ ମଧୁମକ୍ଷୀ ପାଳନ, ଗୃହ ବିଜ୍ଞାନ ଆଦି ବିଭିନ୍ନ ବିଷୟରେ ଗବେଷଣା କରିବାକୁ ବହୁ ଆବଶ୍ୟକତା ରହିଛି ।

ଆମ ଓଡ଼ିଶା ସରକାରଙ୍କ ଅଧିନରେ କୃଷି ସଂପର୍କୀୟ ଯାହା ଗବେଷଣା ଚାଲିଥିଲା ପ୍ରାୟ ସମସ୍ତ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟକୁ ହସ୍ତାନ୍ତରିତ ହୋଇଛି । ଗବେଷଣା ବା ତଥ୍ୟ ଅନୁସଂଧାନ ଅନ୍ତହୀନ ଓ ଅବିରାମ ଗତିରେ ଚାଲେ । କେଉଁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ଗବେଷଣା କରାଯାଉଥାଏ, ତାହା ଏ

ଷ୍ଟ କ୍ଷେତ୍ରରେ ପୂରଣ ହୁଏ ତା ନୁହେଁ । ତା ଛଡା ସବୁ ଗବେଷଣାର ଫଳ ଯେ ହଠାତ୍ ଚାଷୀ ବିଲରେ ଲାଗିଯିବ, ତାହା ମଧ୍ୟ ନୁହେଁ । ମାତ୍ର ଏ ଅହରହ କାମ ପାଇଁ ବହୁ ଅର୍ଥ ଓ ବହୁ ପରିଶ୍ରମର ଆବଶ୍ୟକତା ରହିଛି । ଗବେଷଣାରେ ଅର୍ଥ ବିନିଯୋଗ କେବେ ନିରର୍ଥକ ହୁଏ ନାହିଁ । ତେବେ ଆମ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଗବେଷଣା କାର୍ଯ୍ୟ ପାଇଁ ପୃଥିବୀ ବ୍ୟାଙ୍କ, ଭାରତ ସରକାର, ଭାରତୀୟ କୃଷି ଅନୁସଂଧାନ ପରିଷଦ, ଓଡ଼ିଶା ସରକାର ଆଦିଙ୍କ ଅନୁଦାନ ଯୋଗୁଁ କୃଷି ଓ ଅନ୍ୟାନ୍ୟ ଆନୁସଂଗିକ ବିଦ୍ୟାରେ ଗବେଷଣା ଚାଲୁ ରହିଛି ।

କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧିନସ୍ଥ ଗବେଷଣା ନିର୍ଦ୍ଦେଶାଳୟରେ ବିଭିନ୍ନ ବିଷୟରେ ବହୁ ଗବେଷଣା ଚାଲିଛି ।- ସେଥିରୁ କେତୋଟି ମୁଖ୍ୟ ବିଷୟ ଉପସ୍ଥାପନ କରାଯାଉଛି । ଶୁଷ୍କ ଜମିରେ ବିଭିନ୍ନ ଫସଲ ଚାଷ, କୃଷି କ୍ଷେତ୍ରରେ ଫସଲ ଚକ୍ର ଉପରେ ସାମୁହିକ ଗବେଷଣା, ଧାନ, ଗହମ, ମାଣ୍ଡିଆ, ଆଦି ଖାଦ୍ୟ ଶସ୍ୟ, ମୁଗ, ବିରି ଆଦି ବିଭିନ୍ନ ଡାଲି, ସୋରିଷ ରାଶି, ଚିନାବାଦାମ ଆଦି ତୈଳବୀଜ, ଆଳୁ ଆଦି ପନିପରିବା ଠାକୁରବାଦାମ, ଝୋଟ, ନଡ଼ିଆ, ଆଖୁ, ସୋୟାବିନ୍, ପାନ ଆଦି ଆଦି ଅର୍ଥକରୀ ଫସଲରେ ଉନ୍ନତିକରଣ ପାଇଁ ଗବେଷଣା ଚାଲିଛି । ବିଭିନ୍ନ ଫସଲ ପାଇଁ ଜମି ଅନୁସାରେ ବିଭିନ୍ନ ଜୈବିକ ଓ ରାସାୟନିକ ସାର ପ୍ରୟୋଗ, ଜମିରେ ବହୁଦିନ ଧରି ରାସାୟନିକ ସାର ପ୍ରୟୋଗର ଫଳାଫଳ, ବିହନଦ୍ୱାରା ସଂଯୋଗ ହେଉଥିବା ରୋଗ, ଫସଲର ସୂତ୍ରକୃମି ରୋଗ, ଧାନ ଓ ଅନ୍ୟାନ୍ୟ ଅର୍ଥକରୀ ଫସଲର ବିଭିନ୍ନ ରୋଗ, ଫସଲରେ ପଡୁଥିବା ବିଭିନ୍ନ ଔଷଧର ଅବଶେଷ ଓ ଜୀବ ଶରୀରରେ ତାର ପ୍ରତିକ୍ରିୟା, ବିଭିନ୍ନ ଫସଲ ପାଇଁ ଆବଶ୍ୟକ ପାଣି ଓ ତାର ନିୟନ୍ତ୍ରଣ ଆଦି ଗବେଷଣା ହାତକୁ ନିଆଯାଇଛି । ଉନ୍ନତ ମହୁମାଛି ପାଳନ, ଅବହେଳିତ ବୃକ୍ଷଲତାର ପୁନରୁଦ୍ଧାର, ଓଡ଼ିଶାର ବିଭିନ୍ନ ଆଦିବାସୀ ଅଞ୍ଚଳକୁ ଚାହିଁ ଉନ୍ନତ ଚାଷ ବ୍ୟବସ୍ଥା, ଜଳ ସଂରକ୍ଷିତ ଅଞ୍ଚଳରେ ନୂଆ ନୂଆ ଫସଲ ପର୍ଯ୍ୟାୟ, ଜଳସେଚିତ ଅଞ୍ଚଳରେ ଡାଲି ଓ ତୈଳବୀଜ ଚାଷ, କୃଷି ଭିତ୍ତିକ ଜଙ୍ଗଲ ଆଦି କୃଷି ଉତ୍ପାଦନ ସଂପର୍କୀୟ ବହୁ ଗବେଷଣା ଚାଲିଛି ।

ସେହିପରି ପଶୁପାଳନ ଓ ପଶୁଚିକିତ୍ସା ସଂପର୍କରେ କେତୋଟି ଗବେଷଣା ହାତକୁ ନିଆଯାଉଛି । କୃଷି ଓ ଶିଳ୍ପରୁ ବାହାରୁଥିବା ଅପକାରୀ ପଦାର୍ଥରୁ ପଶୁମାନଙ୍କ ପାଇଁ ଶସ୍ତା ଖାଦ୍ୟ ପ୍ରସ୍ତୁତି, ମାଂସ ପାଇଁ କୁକୁଡା ପାଳନ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ମିଳୁଥିବା ଗଛରୁ ଛେଳିମାନଙ୍କ ପାଇଁ ଖାଦ୍ୟ ରୂପେ ବ୍ୟବହାର, ଗାଈଙ୍କ ଫାଟୁଆ ରୋଗ, କୁକୁଡାଙ୍କର ବିଭିନ୍ନ ରୋଗ ଉପରେ ଗବେଷଣାମାନ ଚାଲିଛି । ୧୯୮୫ ମସିହା ଜୁଲାଇ ସୁଦ୍ଧା ଓଡ଼ିଶା ସରକାରଙ୍କ ସହାୟତାରେ ଖର୍ଚ୍ଚ ବହୁଳ ଗବେଷଣା ବିଷୟକୁ ମିଶାଇ ମୋଟ ୮୭ଟି ବିଷୟରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଗବେଷଣା ଚାଲିଛି ।

ଗବେଷଣା ନିର୍ଦ୍ଦେଶାଳୟର ତତ୍ତ୍ୱାବଧାନରେ ଏ ଗବେଷଣା- ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶହ ଶହ ଉଚ୍ଚ ଶିକ୍ଷିତ ବୈଜ୍ଞାନିକ ଓ ତାଙ୍କ ସହଯୋଗୀମାନଙ୍କ ଦ୍ୱାରା ଅବିରାମ ଭାବରେ ବର୍ଷ ବର୍ଷ ଧରି ଚାଲିଛି । ଭୁବନେଶ୍ୱର, ସମ୍ବଲପୁରର ଚିପିଲିମା, କୋରାପୁଟର ସିମିଳିଗୁଡ଼ା ଓ କେଉଁଝରର ଠାରେ ମୁଖ୍ୟ ଗବେଷଣା କେନ୍ଦ୍ରମାନ ରହିଛି । ଗତ ୧୯୮୩ ମସିହା ଠାରୁ କ୍ରମଶଃ ଫୁଲବାଣୀର ଘୁମୁସର-ଉଦୟଗିରି, ବାଲେଶ୍ୱରରେ ମଣେ ଓ ରାଣୀତାଳ, କଳାହାଣ୍ଡିର ଭବାନୀପାଟଣା, କୋରା- ପୁଟର ଉମରକୋଟ, ଢେଙ୍କାନାଳର ମହିଷାପାଟ ଫାର୍ମମାନଙ୍କୁ ହାତକୁ ନିଆଯାଇ ସେଠାରେ ଗବେଷଣା କାର୍ଯ୍ୟ ଚାଲୁ ରହିଛି । ଝୋଟଚାଷ ପାଇଁ କେନ୍ଦ୍ରାପଡାର ଯକାଙ୍ଗ, ନଡ଼ିଆଚାଷ ପାଇଁ କୋଣାର୍କ, ଡାଲିଚାଷ ପାଇଁ ବ୍ରହ୍ମପୁରର ରତ୍ନପୁର, ମସଲାଚାଷ ପାଇଁ କୋରାପୁଟର ପଟାଙ୍ଗୀ, ସେଇ ସେଇ ଫସଲ ଗବେଷଣା ପାଇଁ ଓଡ଼ିଶା କାହିଁକି ଭାରତ ବିଖ୍ୟାତ । ଏହା ଛଡା ଆଞ୍ଚଳିକ ଫସଲ ବା ତାକୁ ଗ୍ରହଣ କରିଥିବା ଲୋକଙ୍କ ଉନ୍ନତି ପାଇଁ କୋରାପୁଟର ଜୟପୁର, ଉମରକୋଟ, ଫୁଲବାଣୀ, ମୟୂର- ଭଞ୍ଜର କସିପୁର ଆଦି ଫାର୍ମରେ ବିଭିନ୍ନ ଫସଲ ସଂପର୍କରେ ଗବେଷଣାମାନ ଚାଲିଛି । ମୋଟା ମୋଟି ଭାବେ ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ବିଶ୍ୱ ବିଦ୍ୟାଳୟର କିଛି ନା କିଛି ଫସଲ ସଂପର୍କରେ ଗବେଷଣା ଚାଲିଛି ।

ଗବେଷଣାର ବିଭିନ୍ନ ତଥ୍ୟମାନ କେବଳ ଯେ ଗବେଷଣା ଉପଯୋଗୀ ପତ୍ର ପତ୍ରିକାମାନଙ୍କରେ ପ୍ରକାଶିତ ହୁଏ ତା ନୁହେଁ, ସେଥିରେ ଯେଉଁ ତଥ୍ୟ ଚାଷୀମାନଙ୍କର ବିଲରେ କାମରେ ଲାଗି- ପାରିବ, ତା ମଧ୍ୟ ସଂପ୍ରସାରଣ ବିଭାଗ ଜରିଆରେ ଚାଷୀଙ୍କୁ ଯୋଗାଇ ଦିଆଯାଏ । ଏହା ସହଜ ବ୍ୟାପାର ନୁହେଁ । ସମୟ ସାପେକ୍ଷ ମଧ୍ୟ । ଗବେଷଣାର ଏ ତଥ୍ୟକୁ ପ୍ରଥମେ ଗ୍ରାମ୍ୟ ବାତାବରଣରେ ଥର ଥର କରି ପରୀକ୍ଷା କରି ଦେଖାଯାଏ । ଫଳା ଫଳ ହୃଦବୋଧ ହେଲେ ବିଶ୍ୱବିଦ୍ୟାଳୟ ଖର୍ଚ୍ଚରେ ଚାଷୀଙ୍କ ବିଲରେ ତାହା ପ୍ରଦର୍ଶନ କରାଯାଏ । ବୈଜ୍ଞାନିକ ଓ ଚାଷୀ ଉଭୟ ଫଳାଫଳରେ ସନ୍ତୁଷ୍ଟ ହେଲେ ଯାଇ ତାହା ସର୍ବସାଧାରଣ ବ୍ୟବହାର ପାଇଁ ଦିଆଯାଏ । ତା ଛଡା ଯାହା ଏ ବର୍ଷ ବା ୪।୫ ବର୍ଷ ପାଇଁ ଭଲ ଫଳ ଦେଉଛି, ତା ଠାରୁ ଆହୁରି ଭଲ ଫଳ ଦେଲେ ତଥ୍ୟ ବାହାରିଲେ ପୂର୍ବଟିକୁ ବାଦ ଦିଆଯାଇ ନୂତନଟିକୁ ତା ସ୍ଥାନରେ ଦିଆଯାଉଛି ।

ବହୁ ବର୍ଷର ଗବେଷଣାରୁ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଗବେଷକମାନେ କେତେ ନୂଆ ନୂଆ ଅଧିକ ଅମଳକ୍ଷମ କିସମ ବାହାର କରିଛନ୍ତି । ସେଥିରୁ କେତେ ପୁରୁଣା ହୋଇଗଲଣି ଓ କେତେ ନୂଆ ନୂଆ ଭାବେ ବ୍ୟାପି ଚାଲିଛନ୍ତି ।

ଧାନ ଡିପ ଜମି ପାଇଁ କେଶରୀ, ପାରିଜାତ, ସୁଭଦ୍ରା, ରୁଦ୍ର, ଶଂକର ।

ମଧ୍ୟମ ଜମି ପାଇଁ କୁମାର, ହେମ, ରାଜେଶ୍ୱରୀ, ଜଳାତି, ସାଥି, ଜୟା, ପ୍ରତାପ ।

ଗହୀର ଜମିପାଇଁ ଜଗନ୍ନାଥ

ଡାଲି—ମୁଗ-ଧଉଳୀ, ବିରି-ସରଳା

ଗହମ—ସାଗରିକା, ଉତ୍କଳିକା

(ସେସାମସ୍) ରାଶି—ବିନାୟକ, କନକ, କଳିକା

ଆଳୁ–କୁଫ୍ରି, ଲଲିମା

ଝୋଟ–ବଳଦେବ

ଚିନାବାଦାମ–କିଷାନ, ଜଓ୍ୱାନ

ମାଣ୍ଡିଆ–ନୀଳାଚଳ, ଦିବ୍ୟସିଂହ

ଏହାଛଡ଼ା (ଅଳସୀ) ନାଇଜର ଓ ହଳଦୀ ଆଦିର ନୂଆ ନୂଆ କିସମମାନ ବାହାରିଲାଣି ।

ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁ ଗବେଷଣାଗାର ପ୍ରତିଷ୍ଠିତ ହୋଇଛି ସେମାନଙ୍କ ଯୋଗୁଁ ସେ ଅଞ୍ଚଳରେ ଜମିର ପ୍ରକାର ଓ ଜଳବାୟୁକୁ ଚାହିଁ ପୂର୍ବରୁ କରୁଥିବା ଫସଲ ଅପେକ୍ଷା ଚାଷୀର ବେଶୀ ହେଲାଭଳି ବିଭିନ୍ନ ଫସଲ ଓ ଫସଲ ପର୍ଯ୍ୟାୟ ନିର୍ଣ୍ଣିତ ହେଲାଣି । ଢିପ ଜମିରେ ହରଡ଼ ସହ ମାଣ୍ଡିଆ ବା ଚିନାବାଦାମ ମିଶ୍ରିତ ଚାଷରେ ବେଶୀ ଲାଭ ଦେବାର ଜଣା ପଡ଼ିବାରୁ ସେ ଜମିରେ ଚିରାଚରିତ ପ୍ରଥାରେ ହେଉଥିବା ଧାନଚାଷ କରାନଯାଇ ଏବେ ମିଶ୍ରିତ ଚାଷ କରାଯାଇ ଚାଷୀଙ୍କୁ ବେଶୀ ଲାଭ ମିଳୁଛି । ସେହିପରି ଧାନତଳିର ବୟସ, ରୋଇବାର ସମୟ, ସାରର ପରିମାଣ ଓ ଦେବାର ସମୟ ନିର୍ଦ୍ଧାର୍ଯ୍ୟ ଭାବେ ଜଣା ପଡ଼ିବାରୁ ଯେଉଁମାନେ ଏ ପଦ୍ଧତି ଗ୍ରହଣ କରୁଛନ୍ତି, ସେମାନେ ଅଧିକ ଲାଭ ପାଉଛନ୍ତି । ପାଣିର ଉଚିତ ବ୍ୟବହାର କଲେ ସେତିକି ପାଣିରେ ଶତକଡ଼ା ୨୫–୩୦ ଭାଗ ଜମିରେ ଜଳସେଚନ କରାଯାଇ ପାରିବ । ସେହିପରି ରୋଗ ପୋକ ନ ଲାଗିବା ଅଧିକ ଅମଳକ୍ଷମ କିସମ ମଧ୍ୟ ବାହାରୁଛି । ବିଭିନ୍ନ ବିହନ ଉପରେ ସୂର୍ଯ୍ୟକିରଣର ପ୍ରଭାବ ସମ୍ବନ୍ଧରେ ଗବେଷଣା ଚାଲିଛି । ସୂର୍ଯ୍ୟକିରଣର ପରିମାଣ ଓ ପଡୁଥିବା ସମୟ ଭେଦରେ ସେ ବିହନରୁ ଗଛ ହେଲେ ଫଳ ଉତ୍କୃଷ୍ଟ କିସମର ଓ ବେଶୀ ପରିମାଣରେ ହେଉଛି ।

ପଶୁପାଳନ ଓ ପଶୁଚିକିତ୍ସା ସଂପର୍କୀୟ ଗବେଷଣାରୁ ବ... ଉପାଦେୟ ତଥ୍ୟମାନ ବାହାରୁଛି । ଆମ ରାଜ୍ୟରେ ଗୋରୁ ଗା... ହସ୍ତା ହସ୍ତା ଧରି କିଛି ନଖାଇବା ଏକ ସାଧାରଣ ରୋଗ । ଏ... ଫଳରେ ସେମାନେ ଦୁର୍ବଳ ହୁଅନ୍ତି । ଗାଈ ଦୁଧ ଦିଏ ନାହିଁ ଓ ବଳ... ହଳ କରି ପାରେନାହିଁ । ବହୁ ଦିନର ଗବେଷଣା ପରେ ଏକ ନିର୍ଦ୍ଦି... ପରିମାଣ ଓ ନିର୍ଦ୍ଦିଷ୍ଟ ସମୟ ପାଇଁ ଲିଭର ଏକସଟ୍ରାକ୍ଟ, ଭିଟାମିନ୍ ବି କଂପ୍ଲେକ୍ସ, ଆଣ୍ଟିହିଷ୍ଟାମିନ୍ସ ଆଦି କେତୋଟି ଔଷଧ ଦେଇ ନିଶ୍ଚିତ ରୋଗ ଚିକିତ୍ସା କରାଯାଇ ପାରୁଛି । ସେହିପରି ଗୋରୁଙ୍କ ଗର୍ଭପାତ ରୋଗର କାରଣ ଓ ଚିକିତ୍ସା ଉପରେ ଗବେଷଣା କରାଯାଇ ଉପାଦେୟ ତଥ୍ୟମାନ ମିଳିଛି । ଅଣ୍ଡିରା ବାଛୁରୀମାନଙ୍କର ପରିସ୍ରା ନଳୀରେ ଜମିଥିବା ରାସାୟନିକ ପଥରକୁ ଶଲ୍ୟ ଚିକିତ୍ସାଦ୍ୱାରା ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ବାହାର କରାଯାଇ ଶହ ଶହ ବାଛୁରୀଙ୍କ ଜୀବନରକ୍ଷା କରିବା ଛଡ଼ା ବହୁ ଭଲ ଭଲ ବଳଦକୁ ମୃତ୍ୟୁ ମୁଖରୁ ରକ୍ଷା କରାଯାଇ ପାରୁଛି ।

ଗବେଷଣା ନିର୍ଦ୍ଦେଶାଳୟ ଏବେ ବିଭିନ୍ନ ସୂତ୍ରରୁ ଅର୍ଥ ଆଣି ଧାନ, ଚିନାବାଦାମ, ଆଳୁ, ବିରି, ମୁଗ ଆଦି ଡାଲି ଜାତୀୟ ଫସଲ ପାଇଁ ଉନ୍ନତ କିସମର ବିହନ ଉତ୍ପାଦନ କରି ଓଡ଼ିଶା ସରକାର ଓ ବିହନ ନିଗମକୁ ଯୋଗାଇ ଦେବା କାର୍ଯ୍ୟକ୍ରମ ହାତକୁ ନେଇଛି । କେବଳ ଭୁବନେଶ୍ୱର ଓ ଗମ୍ଭାରିପାଲି ଫାର୍ମରୁ ପ୍ରାୟ ୪ ହଜାର କ୍ୱିଣ୍ଟାଲ ଧାନ ବିହନ ଉତ୍ପନ୍ନ ହେବାର ଯୋଜନା ରହିଛି ।

ଆମ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ଗବେଷଣାମାନ କରି ନୂଆ ନୂଆ ତଥ୍ୟ ଉଦ୍ଭାବନ କରିବାକୁ ଉଚ୍ଚଶିକ୍ଷିତ ବୈଜ୍ଞାନିକମାନଙ୍କର ଅଭାବ ନାହିଁ । ସରକାରୀ ବା ବେସରକାରୀ ଅନୁଷ୍ଠାନମାନଙ୍କ ଠାରୁ ଅନୁଦାନର ଅଭାବ, ଉଚ୍ଚମାନର ଗବେଷଣା ଉପଯୋଗୀ ଯନ୍ତ୍ରପାତିମାନ ବିଦେଶରୁ ଆମଦାନୀ କରିବାରେ କଟକଣା, ପରିବେଶ ଓ ଗବେଷଣାଗାରର ଅଭାବ ଆଦି କେତେଗୁଡ଼ିଏ ମୌଳିକ ବିଷୟ ଉନ୍ନତ ଗବେଷଣାର ପ୍ରତିବନ୍ଧକ ହେଉଛି । ସମୟ ହିଁ ଏହାର ସମାଧାନ କରିବ । ○ ○ ○







ସରକାରୀ ମୁଦ୍ରଣାଳୟରେ ବିଶ୍ୱକର୍ମା ପୂଜା ....

# ସରକାରୀ ମୁଦ୍ରଣାଳୟରେ

**ଶ୍ରୀ ଶ୍ରୀ ବିଶ୍ୱକର୍ମା ପୂଜା ଉପଲକ୍ଷେ ସାଂସ୍କୃତିକ କାର୍ଯ୍ୟକ୍ରମ**

ପାରମ୍ପରିକ ବିଧିବିଧାନାନୁଯାୟୀ ପ୍ରତିବର୍ଷପରି ଏ ବର୍ଷର 'ବିଶ୍ୱକର୍ମା ପୂଜା' ସରକାରୀ ମୁଦ୍ରଣାଳୟ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ପୂଜା କମିଟିର ଆବେଗମୟ ତତ୍ପରତା ଓ ତ୍ରୁଟିଶୂନ୍ୟ ପରିଚାଳନା ଏହି ଉତ୍ସବଟିକୁ ସର୍ବାଙ୍ଗସୁନ୍ଦର କରି ସବୁରି ମନରେ ଆନନ୍ଦର ଢେଉ ଛୁଟାଇଦେଇଛି ।

ଏହି ଅନୁଷ୍ଠାନର ମାନ୍ୟବର କମିଶନରଙ୍କ ପୌରୋହିତ୍ୟକ୍ରମେ ନିର୍ଦ୍ଦେଶକ, ଉପ ନିର୍ଦ୍ଦେଶକ ଓ ଅନ୍ୟାନ୍ୟ ଉଚ୍ଚ ପଦସ୍ଥ ଅଧିକାରୀ ଏବଂ ପୂଜା କମିଟିର ସମ୍ପାଦକ ତଥା ଅଗଣିତ କର୍ମଚାରୀମାନଙ୍କର ଉପସ୍ଥିତିରେ ନିର୍ଦ୍ଦିଷ୍ଟ ସମୟରେ ପୂଜା ଆରମ୍ଭ ଓ ସମାପନ ହୋଇଥିଲା । କଟକର ସୁନିପୁଣ ଶିଳ୍ପୀ 'ପାଣ୍ଡବମାନଙ୍କ ଯତୁ ଗୃହ ଦାହ' ବିଷୟଟିକୁ ପୂଜା ମଣ୍ଡପରେ ଦର୍ଶାଇଥିଲେ । ତହିଁରୁ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା ଯେ, ସଂସାରରେ ଯାହା କିଛି ସୃଷ୍ଟି, ସବୁ ସେହି ପ୍ରଭୁ 'ବିଶ୍ୱକର୍ମାଙ୍କ ଇଙ୍ଗିତରେ.... ।' ମୂର୍ତ୍ତିଗୁଡ଼ିକର ଜୀବନ୍ତ ଗଠନ ଓ ବେଶବିନ୍ୟାସର କମନୀୟ ପରିପାଟୀ ସବୁରି ଅନ୍ତରରେ ଭାବାବେଶ ସୃଷ୍ଟି କରୁଥିଲା ଓ ଏହି ଅନୁଷ୍ଠାନର ପ୍ରତ୍ୟେକ କର୍ମଚାରୀ ତଦ୍‌ଗତ ପ୍ରାଣରେ ପ୍ରଭୁଙ୍କ ଉଦ୍ଦେଶ୍ୟରେ ପୁଷ୍ପାଞ୍ଜଳି ଦେଇ ନିଜର ଭକ୍ତିପୂତ ପ୍ରଣତି ଜଣାଇଥିଲେ ।

ପୂଜା ପରେ, ପୂଜା କମିଟିର ଅନ୍ୟ ଏକ ଉତ୍ସବମୁଖର ପରିବେଶ ଥିଲା "ଭେଜି ଉତ୍ସବ", ଯାହା ସମସ୍ତଙ୍କ ଅନ୍ତରରେ ଅପୂର୍ବ ଭ୍ରାତୃତ୍ୱ ଓ ଏକ କୁଟୁମ୍ବର ଜଣେ ଜଣେ ସଭ୍ୟ ରୂପେ ଭାବାବେଶ ସୃଷ୍ଟି କରୁଥିଲା ।

ପ୍ରଭୁଙ୍କର ସନ୍ଧ୍ୟା ଆରତି ପରେ ମନୋରଞ୍ଜନ କାର୍ଯ୍ୟକ୍ରମରେ ନାଟକ ପରିବେଷଣ ସମୟରେ ଦୈବ ଦୁର୍ବିପାକ ହେତୁ ପ୍ରବଳ ବର୍ଷା ଆରମ୍ଭ ହୋଇଯିବାରୁ ସାମୟିକ ଭାବେ କାର୍ଯ୍ୟକ୍ରମଟିକୁ ବନ୍ଦ କରି ଦିଆଯାଇଥିଲା ପରେ ତା୨୫।୯।୮୪ରିଖ ଘଣ୍ଟା ୧୦ ଘଟିକା ସମୟରେ ନିର୍ଦ୍ଦେଶକ (ବୈଷୟିକ)ଙ୍କ ଦ୍ୱାରା ଶୁଭ ଉଦ୍‌ଘାଟିତ ହୋଇଥିଲା— ମହାନ୍ ପୌରାଣିକ ନାଟକ 'ଶାନ୍ତି ପ୍ରତିଷ୍ଠା' । ଏହି ଉଦ୍‌ଘାଟନ ଉତ୍ସବରେ ସଭାପତିତ୍ୱ କରିଥିଲେ ବିଶ୍ୱକର୍ମା ପୂଜା କମିଟିର କାର୍ଯ୍ୟକାରୀ ସଭାପତି ଶ୍ରୀଯୁକ୍ତ ତ୍ରିଲୋଚନ ନାଟିଆ ।

ଯୁଗେ ଯୁଗେ ଦୁଷ୍ଟର ଦମନ ଓ ଶିଷ୍ଟର ପାଳନ ପାଇଁ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କୁ ଚକ୍ର ଧାରଣ କରିବାକୁ ହୋଇଥାଏ....... । ଶିବବରପ୍ରାପ୍ତ ଦୁର୍ବୃତ୍ତ ହଂସକର ଅତ୍ୟାଚାରରେ ନିପୀଡ଼ିତ ଋଷି ଦୁର୍ବାସା ହା ହା କାର କରେ । ତା'ର ଶିଷ୍ୟ ସହ ସେ ଦର୍ଶନ ହରାଏ । ଗୁହାରି କରେ ପ୍ରଭୁ ଶ୍ରୀକୃଷ୍ଣଙ୍କ ଚରଣରେ । ପରିଶେଷରେ ପରମ ବୈଷ୍ଣବ ମହାରାଜା ବ୍ରହ୍ମଦତ୍ତଙ୍କ ପୁତ୍ର ଅତ୍ୟାଚାରୀ ହଂସକର ଅତ୍ୟାଚାରର ସମୁଚିତ ଶାସ୍ତି ବିଧାନ ହୁଏ ଓ ଜଗତରେ "ଶାନ୍ତି ପ୍ରତିଷ୍ଠା" ହୁଏ । ଏହି ନାଟକର ବିଭିନ୍ନ ଭୂମିକାରେ ଆକର୍ଷଣୀୟ ଅଭିନୟ ହୋଇଥିଲା । ପୁରୁଷ ଭୂମିକାରେ ହଂସକ, ଡିମ୍ଭକ, ସୁପର୍ଣ୍ଣ, ପଦ୍ମପାଣି, ବ୍ରହ୍ମଦତ୍ତ, ସୋମଦତ୍ତ ଓ ଦୁର୍ବାସା—ନାରୀ ଭୂମିକାରେ ଉଲ୍‌କା, ରମ୍ଭା, ମଙ୍ଗଳା ଓ କବାଲି କାର୍ଯ୍ୟକ୍ରମରେ 'ହାଲ୍‌ଚା' ।

ସୁପର୍ଣ୍ଣ ଭୂମିକାରେ ଅଭିନୟ କରୁଥିବା ଶିଶୁ କଳାକାର ଶ୍ରୀମାନ୍ ସୌଭାଗ୍ୟରବି ରଥ (ବାପୁ)ଙ୍କର ଅଭିନୟ ଅତୀବ ଚିତ୍ତାକର୍ଷକ ହୋଇଥିଲା । ଭବିଷ୍ୟତରେ ସେ ଯେ ଜଣେ ଦକ୍ଷ କଳାକାର ହେବେ, ଏଥିରେ ସନ୍ଦେହ ନାହିଁ ।

ପ୍ରକାଶଥାଉକି, ଏସବୁର ମୂଳରେ ଏହି ଅନୁଷ୍ଠାନର ସମ୍ମାନ ଧନ୍ୟ ମଂଚ ପରିଚାଳକ ତଥା ନିର୍ଦ୍ଦେଶକ ଶ୍ରୀଯୁକ୍ତ ରାଜକିଶୋର ଦେଙ୍କ ଉଦ୍ୟମ ପ୍ରଶଂସନୀୟ ।

ଏହି ଭାବଧାରାରେ ପ୍ରତିବର୍ଷ ଏହି ଅନୁଷ୍ଠାନ ଉତ୍ସବ ମୁଖରିତ ହୋଇଉଠୁ, ଏହାହିଁ ଅନୁଷ୍ଠାନ ତରଫରୁ ପ୍ରଭୁ ବିଶ୍ୱକର୍ମାଙ୍କ ନିକଟରେ ପ୍ରାର୍ଥନା ।

○

# ଗୁରୁଦିବସ ଏକ ଅନୁଚିନ୍ତା

ଘନଶ୍ୟାମ ବିଶ୍ୱାଳ

ଜୀବନର ରୂପାୟନ ହିଁ ସୃଷ୍ଟିର ପ୍ରକାଶ । ମାନବ ଜୀବନର ମୂଳାଧାର ତା'ର ବ୍ୟକ୍ତିତ୍ୱର ପରିପ୍ରକାଶରେ । ଗତିଶୀଳ ଜୀବନଧାରାର ଅୟମାରମ୍ଭ ମଣିଷ ତା'ର ବାଲ୍ୟାବସ୍ଥାରୁହିଁ କରିବାକୁ ଶିଖିଥାଏ । ତା'ର ଏହି ଉଦ୍‌ବର୍ତ୍ତନର ଧାରା ବିଭିନ୍ନତା ମଧ୍ୟ ଦେଇ ଗତି କରେ । ବିଭିନ୍ନତା ଯେହେତୁ ଜୀବନ ଜାହ୍ନବୀର ଅବପଟଚିତ୍ରପଟ—ସେହି ବିଭିନ୍ନତାର ଭିଡ଼ର ପଥମଧ୍ୟରୁ ତାକୁ ତା'ର ନିଜସ୍ୱ ପଥ ବାଛିବାକୁ ପଡ଼ିଥାଏ । ପଥ ନିର୍ଣ୍ଣୟରେ ପାଥେୟ ରୂପେ ତାକୁ ଅନ୍ୟର ଆଶ୍ରୟ ଲୋଡ଼ିବାକୁ ହୁଏ । ଆଶ୍ରୟ ଓ ଆଶ୍ରିତର ସମନ୍ୱୟରେ ବ୍ୟକ୍ତିତ୍ୱର ପରିଚୟ ପ୍ରତିପାଦିତ ହୋଇଥାଏ । ଆଶ୍ରିତର ଆଶ୍ରୟ ଖୋଜିବାର ନିର୍ଭୁଲତା ତାକୁ ସମାଜରେ ଜଣେ ସାମାଜିକ ଜୀବ ରୂପେ ସ୍ଥାନ ଦିଏ । ମଣିଷର ପ୍ରଥମ ଆଶ୍ରୟଦାତା ତା'ର ପିତା ମାତା । ପିତାମାତା ତା'ର ଜୀବନ୍ତ ପ୍ରତିମା (ଭଗବାନ) ହିସାବରେ ତାକୁ ତା'ର ଆଶ୍ରୟ ଖୋଜିବାରେ ସାହାଯ୍ୟ କରିଥାନ୍ତି । ସେହି ଆଶ୍ରୟ ହିଁ ତା'ର ଗୁରୁ । ମଣିଷ ଜୀବନର ସଫଳତା ତା'ର ବୈଷୟିକ ବା ଭୌତିକ କୃତିତ୍ୱରେ ପ୍ରକାଶ ପାଏ ନାହିଁ । ପୃଥିବୀ ପୃଷ୍ଠରେ କେତେ ସାମ୍ରାଜ୍ୟ ଗଢ଼ା ହୋଇଛି ଏବଂ କେତେ ସାମ୍ରାଜ୍ୟ ଭାଙ୍ଗି ଚୂର୍ଣ୍ଣୀଭୂତ ହୋଇଯାଇଛି । ମାତ୍ର ମନୁଷ୍ୟର ଆତ୍ମା ଯେଉଁ ସତ୍ୟ ଓ ସାଧୁତା ଅନ୍ୱେଷଣରେ ଯୁଗେ ଯୁଗେ ଅଗ୍ରଗତିର ପଥରେ ଆଗେଇ ଯାଇ ବିକାଶ ଲାଭ କରିଛି ଏବଂ ଯେଉଁମାନେ ଏହି ଆଧ୍ୟାତ୍ମିକ ଅଭିଯାନର ଯାତ୍ରାପଥରେ ଓ ମାନବୀୟ ସଂସ୍କୃତିର ଇତିହାସ ଉପରେ ଚିରଦିନ ଲାଗି ଦଣ୍ଡାୟମାନ ହୋଇ ରହିଛନ୍ତି, କେବଳ ସେହିମାନଙ୍କଠାରେହିଁ ମାନବ ଜୀବନର ସାର୍ଥକତା ପ୍ରକଟିତ ହୋଇଛି ।

ଭାରତବର୍ଷର ଉତ୍କର୍ଷତା ବହୁପୁରାତନ କାଳରୁ ପ୍ରତିପାଦିତ ହୋଇଛି । ଗୁରୁଦିବସରୂପେ ଜ୍ଞାନଗୁରୁ ଓ ରାଷ୍ଟ୍ରଗୁରୁ ଡକ୍ଟର - ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଜନ୍ମଦିବସକୁ ପାଳନ କରାଯାଉଛି । ୧୮୮୮ ମସିହା ସେପ୍ଟେମ୍ବର ୫ତାରିଖରେ ରାଧାକୃଷ୍ଣନ୍ ତାମିଲ ନାଡୁର ତିରୁତାନିଠାରେ ଜନ୍ମଗ୍ରହଣ କରିଥିଲେ । ବିଶ୍ୱର ଜଣେ ପ୍ରଥମ ଶ୍ରେଣୀର ବିଜ୍ଞ ଓ ଋଷି ପ୍ରତିମ ବ୍ୟକ୍ତି ହିସାବରେ ଭାରତରତ୍ନ ସର୍ବପଲ୍ଲୀ ରାଧାକୃଷ୍ଣନ ଦର୍ଶନ, ସାହିତ୍ୟ, ରାଜନୀତି, ରାଷ୍ଟ୍ରନୀତି, ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ଥିଲେ ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ । ତାଙ୍କର ଗଭୀର ଓ ପ୍ରସାରିତ ଜ୍ଞାନ ଗରିମା, ପ୍ରଖର ଓ ଯଥାର୍ଥ ଚମତ୍କାର ବାଗ୍ମୀତା, ସୁ-ତୀକ୍ଷ୍ଣ ଜ୍ୟୋତିଷ୍ମାନ୍ ବୌଦ୍ଧିକତା ଏବଂ ତାଙ୍କର ସ୍ୱଚ୍ଛ ବ୍ୟକ୍ତିତ୍ୱ ସଂପନ୍ନ ଏକ ଉଦାର ଗରିର୍ଦ୍ଧିକତା ତାଙ୍କୁ ଭାରତ ଓ ବିଶ୍ୱର ଜନ ଚେତନାରେ ଏକ ପୂଜାର୍ହ ଆସନରେ ବସାଇ ଦେଇଥିଲା । ମନୁଷ୍ୟର ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ଜୀବନରେ 'ପଥଦ୍ରଷ୍ଟା ଭାବେ ଯେଉଁ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ଏ ଶତାବ୍ଦୀରେ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ—ରାଧାକୃଷ୍ଣନ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେ ଥିଲେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ପ୍ରଜ୍ଞା ଓ ମନୀଷାର ଏକ ସମ୍ମିଳିତ ମୂର୍ତ୍ତି । ତାଙ୍କର ଚିନ୍ତ ଭୂମିରେ ତୀକ୍ଷ୍ଣ ବିଶ୍ଳେଷଣାତ୍ମକ ବିଚାରବୁଦ୍ଧି ସଙ୍ଗେ ଆଧ୍ୟାତ୍ମିକ ଭାବଧାରା ପ୍ରେମଭକ୍ତିମୂଳକ ବିଶ୍ୱାସବୃତ୍ତି ନିର୍ବିବାଦରେ ମିଶାମିଶି ହୋଇ ସକ୍ରିୟ ରହିଥିଲା ।

ସେ ମୂଳତଃ ଜଣେ ମହାନ୍ ଶିକ୍ଷକ ଆଉ ଭାରତ ବର୍ଷର ଶିକ୍ଷକ କୁଳର ମହତ୍ତ୍ୱକୁ ଚିରଦିନ ପାଇଁ ଜାଜ୍ୱଲ୍ୟମାନ କରିଛନ୍ତି । ବିଭିନ୍ନ ବ୍ୟପଦେଶରେ ସେ ବହୁବାର ଏହି ପୃଥିବୀର ବହୁଦେଶ ପ୍ରଦକ୍ଷିଣ କରିଛନ୍ତି । ସର୍ବତ୍ର ସେ ଭାରତବର୍ଷର ଯୁଗଯୁଗାନ୍ତର ସୁସଜ୍ଜିତ ପ୍ରଜ୍ଞାବାଣୀକୁ ପ୍ରଚାର କରିଛନ୍ତି ଏବଂ ଆଧୁନିକ ମନୁଷ୍ୟ ସମାଜକୁ ଆଶା ଓ ଆଲୋକର ବାଣୀ ଶୁଣାଇ ଯାଇଛନ୍ତି । ଅଧୁନାତନ ସମାଜର ଶିକ୍ଷକକୁଳ ସେହି ମହାନ୍ ଆତ୍ମାର ପଦାଙ୍କ ଅନୁସରଣ କଲେ ଦେଶ ଓ ଦଶର ଯେ ଅଭୂତପୂର୍ବ ଉନ୍ନତି ସାଧନହେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦୁଃଖର ବିଷୟ କେତେକ ଶିକ୍ଷକ ଶିକ୍ଷାଦାନରେ ଜଣେ ଜଣେ ନିର୍ବାଚିତ ପ୍ରତିନିଧିରୂପେ କାର୍ଯ୍ୟ କରୁଛନ୍ତି । A true teacher must be an unelected representative of the students. ଏ କଥାର ତାତ୍ପର୍ଯ୍ୟ ନିଜେ ବୁଝିବା ସହଜ କିନ୍ତୁ ଅନ୍ୟକୁ ବୁଝାଇବା କିପରି ? ବରଂ ତାହା 'ଅଜ୍ଞ ସୁଖମାରାଧ୍ୟଃ ସୁଖତର ମାରାଧ୍ୟତେ ବିଶେଷଜ୍ଞ, ଜ୍ଞାନ ଲବ ଦୁର୍ବିଦଗ୍ଧଂ ବ୍ରହ୍ମାପି ତଂ ନ —ରଂଜୟତି'ର ରୂପନେବ । ଏହାକୁ ଅନ୍ୟ କଥାରେ କହିଲେ ଏହାର ସରଳ ଅର୍ଥ ଏହା ହେବ—"ଜଣେ ମୂର୍ଖ ଲୋକକୁ ବୁଝେଇ ଦେବା ସହଜ, ଶିକ୍ଷିତ 'ଲୋକଙ୍କୁ ଆହୁରି ସହଜରେ ବୁଝାଇ ଦିଆଯାଇପାରେ । ମାତ୍ର ଜଣେ ଅର୍ଦ୍ଧ ଶିକ୍ଷିତ ଲୋକକୁ ସ୍ୱୟଂ ବ୍ରହ୍ମା ମଧ୍ୟ ବୁଝାଇ ପାରିବେ ନାହିଁ" । ସୁତରାଂ ହେ ସାଧୁ— ନିଜର କର୍ତ୍ତବ୍ୟ ସଂପାଦନେ ସାବଧାନତା କ'ଣ ଆବଶ୍ୟକ ନୁହେଁ ?

ସାମାଜିକ ଶ୍ରେଷ୍ଠଜୀବ ମନୁଷ୍ୟ ବର୍ତ୍ତମାନ ଦୁଇଟି ପୃଥିବୀର ମଧ୍ୟସ୍ଥଳରେ ଦଣ୍ଡାୟମାନ—ଗୋଟିଏ ମୃତ୍ୟୁମୁଖୀ ଓ ଓ ଅନ୍ୟଟି ଜନ୍ମନେବାପାଇଁ ସଂଗ୍ରାମରତ । ଏହି ନବଜାତ ଦାନବ ହେବ ନା ଦେବଦୂତ ହେବ ? ଆଜି ଯଦି ସୃଷ୍ଟି ବିକୃତ ହୋଇଥାଏ—ତେବେ ଏହାର କାରଣ ହେଉଛି ଯେ ମନୁଷ୍ୟ ନିଜେ ବିକୃତ । ଧର୍ମପୂର୍ଣ୍ଣ ଶିକ୍ଷାରୂପକ କୋମଳ ବସ୍ତ୍ରରେ ତୁମର ମୁଖମଣ୍ଡଳ ପୋଛିଦିଅ, ଦେଖିବ- ପୃଥିବୀର ସୌନ୍ଦର୍ଯ୍ୟ ତୁମରି ସୌନ୍ଦର୍ଯ୍ୟର ପ୍ରତିଫଳନ । ଏହା କିପରି ସଂଭବ ? ନିଜକୁ ନିଜେ ପରିଷ୍କୃତ କରିବା ଏକ ଦୁରୂହ କାର୍ଯ୍ୟ ଏବଂ ସାଧାରଣ ବ୍ୟକ୍ତି ପକ୍ଷରେ ତାହା ଆଦୌ ସହଜ-ସାଧ୍ୟ ନୁହେଁ । ନୈତିକ ଜୀବନଯାପନ, ବିସ୍ତର ବୁଦ୍ଧିରମାନ, ଧାର୍ମିକ ଗୁଣ ଏବଂ ସାଂସ୍କୃତିକ ମୂଲ୍ୟବୋଧ ସଂପର୍କରେ ଅନେକ କହୁଥିଲେ ମଧ୍ୟ ଖୁବ୍ କମ୍ ଲୋକ ସେହି ଅନୁସାରେ ନିଜର ଜୀବନ ନିର୍ବାହ କରନ୍ତି । ଏସବୁ ଗୁଣକୁ ନିଜ ଜୀବନରେ କାର୍ଯ୍ୟକାରୀ ନକଲେ କେହି ପୂର୍ଣ୍ଣତା ଲାଭ କରି-ପାରିବ ନାହିଁ । ଉଚିତ ଶିକ୍ଷାଦାନ ଓ ଗ୍ରହଣଦ୍ୱାରା ହିଁ ଏହା କେବଳ ସଂଭବ ହୋଇଥାଏ ।

ଅନ୍ତରର ସୌନ୍ଦର୍ଯ୍ୟକୁ ପ୍ରକାଶ ନ କଲେ ମଣିଷର ଜୀବନ ପବିତ୍ର ଓ ଆଲୋକିତ ହୋଇପାରିବ ନାହିଁ । ସମାଜରେ ଜୀବନ ଧାରଣର ମାନ ଉଚ୍ଚ କରିବା ଲାଗି ଅନେକ ରାଜ-ନୈତିଜ୍ଞ, ଅର୍ଥନୀତିଜ୍ଞ ଓ ବୈଜ୍ଞାନିକଙ୍କର ବିରାଟ ଦାୟିତ୍ୱ ସହିତ ଅନେକ ସଂସ୍ଥା ଓ ଅନୁଷ୍ଠାନର ଆବଶ୍ୟକତା ଅଛି, କିନ୍ତୁ ଆମେ ସୁସ୍ଥ ମାନବିକତା ଲାଭ କରି ପାରିଲେ ସମାଜ ଜୀବନରେ ସୁଖ ସ୍ୱାଚ୍ଛନ୍ଦ୍ୟ ଆଶା କରି ପାରିବା । ମନୁଷ୍ୟ ହୃଦୟରେ ସଦ୍‌ଭାବନା, ମସ୍ତିଷ୍କରେ ସ୍ୱୟଂସୃଷ୍ଟ ମୂଲ୍ୟବୋଧ ରହିଲେ, ସେ ତା'ର ପରିବେଶ ପ୍ରତି ସୁସ୍ଥ ମନୋଭାବ ପୋଷଣ କରିପାରିବ । ଅବଶ୍ୟ ଲକ୍ଷ୍ୟ ନ ରହିଲେ ବାଟଚଲା ଅଟକି ଯିବ । ଫଳର ଆଶା ନ ରହିଲେ କାମ କରିହେବ ନାହିଁ । ହାତ ଥକି ପଡ଼ିବ । ଖାଲି କାମକରିବା ପାଇଁ କିଏ କାମ କରିବ ? ନିରାଶାରେ କାଳେ ଆମେ ଭାଙ୍ଗି ପଡ଼ିବୁ—ସେଥିପାଇଁ ସେ ଉପଦେଶ ଆମକୁ ଦିଆଯାଇ ଥାଏ । ଉପଦେଶର ତାତ୍ପର୍ଯ୍ୟ ନ ବୁଝି ତାକୁ ପାଲଟେଇଲେ ଲାଭ କ'ଣ ? ସବୁକଥା ସବୁବେଳେ ଯୁଗୋପଯୋଗୀ ହୋଇ ରହିବନାହିଁ । ସମୟ ବଦଳୁଛି, ପରିବେଶ ବଦଳୁଛି, ଠିକ୍ ସମତାଳରେ ମଣିଷର ଚିନ୍ତାଧାରା ମଧ୍ୟ ବଦଳୁଛି । ପରିବେଶ ସଙ୍ଗେ ଖାପ ଖୁଆଇ ଆମକୁ କର୍ତ୍ତବ୍ୟର ପଥ ଠିକଣା କରିବାକୁ ହେବ । କର୍ତ୍ତବ୍ୟର ପଥ ଠିକଣା କରିବା ମାନସିକ ସ୍ତରର କଥା । ଯଦି ଆମେ ମାନସିକ ସ୍ତରରେ ପୂର୍ଣ୍ଣତାରେ ରହୁ, ତେବେ କାମନା ଆସି ସେହି ପୂର୍ଣ୍ଣତାରେ ଲୀନ ହୋଇ ଯିବ । ମାନସିକ ପୂର୍ଣ୍ଣତା ଥିଲେ ଶୂନ୍ୟତା ସୃଷ୍ଟିର ପ୍ରଶ୍ନ ଉଠେନାହିଁ ଏବଂ ଏ ପରି ବ୍ୟକ୍ତିର ମନଭିତରେ ଘୂର୍ଣ୍ଣିବାତ୍ୟା ସୃଷ୍ଟିହେବା ଅସମ୍ଭବ । ଭାରତୀୟ ଦର୍ଶନ ପୂର୍ଣ୍ଣତାର ଦର୍ଶନ, ଏହା ସର୍ବତ୍ର ଓ ସର୍ବଦା ପୂର୍ଣ୍ଣ । 'ପୂର୍ଣ୍ଣମଦଃ, ପୂର୍ଣ୍ଣମିଦଂ, ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ, ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ' । ଏଥିର ସାର ଗର୍ଭିକ ଅର୍ଥ ଏହା ଯେ ପୂର୍ଣ୍ଣକୁ ପୂର୍ଣ୍ଣ ଯୋଡ଼ିଦେଲେ ମଧ୍ୟ ଶୂନ୍ୟ ବଦଳରେ ପୂର୍ଣ୍ଣ ଅବଶେଷ ରହେ । 'ଶୂନ୍ୟ' ବୋଲି କିଛି ନାହିଁ । ବ୍ୟକ୍ତି ତା' ନିଜ ମନ ମଧ୍ୟରେ ଭ୍ରମବଶତଃ ଶୂନ୍ୟତା ସୃଷ୍ଟିକରେ । ଏହି ଶୂନ୍ୟତା ବାସ୍ତବ ନୁହେଁ; ଏହା ମନର କଳ୍ପନାରୁ ସମ୍ଭୂତ । ଯୋଗୀ ଆନନ୍ଦପୂର୍ଣ୍ଣ ମ ଉଚ୍ଚାରଣ କରେ 'ପୂର୍ଣ୍ଣୋଽହମ୍' । ଯେ ପୂର୍ଣ୍ଣ—ସେ ଶୂନ୍ୟ କିପରି ? ଶୂନ୍ୟତା ନ ଆସିଲେ ମାନସିକ ଘୂର୍ଣ୍ଣିବାତ୍ୟା ହେବ କିପରି ?

ସାଗର ବର୍ଷର ସବୁ ଋତୁରେ ପୂର୍ଣ୍ଣ ବର୍ଷା, ଶୀତ, ଗ୍ରୀ ସବୁ ଋତୁରେ ସମୁଦ୍ର ପୂର୍ଣ୍ଣତାରେ ଗୁରୁଗମ୍ଭୀର ହୋଇ ରହିଥାଏ ନଦୀମାନେ ଅନବରତ ଜଳରାଶି ନେଇ ସମୁଦ୍ରରେ ମିଶେ ଦିଅନ୍ତି । ସମୁଦ୍ର କେବେ କହେନା : 'ମୁଁ ଏହା ଗ୍ରହଣ କ ପାରିବି ନାହିଁ' । ସମୁଦ୍ର ଜଳ ମାଗେନା କିମ୍ବା ଜଳ ପା ଆତୁର ହୁଏନା । ସେ ସର୍ବଦା ପୂର୍ଣ୍ଣ, ତା' ଠାରେ ଶୂନ୍ୟତା କେବେ ଦେଖା ଦିଏନା ।

ଗୁରୁ—ଛାତ୍ର ସଂପର୍କରେ ସେତୁ କେତେ ମହାନ୍ ତାହା ଆମର ଅତୀତ ଆମକୁ ଶିକ୍ଷା ଦେଇଛି । 'ଗୁରୁ' ଶବ୍ଦ ବ୍ୟାପକ ଅର୍ଥ ଆଜି କଦର୍ଥ ହୋଇଛି ଓ 'ଛାତ୍ର' ଶବ୍ଦର ଅର୍ଥ ମଧ୍ୟଠିକ୍ ତଦ୍ରୂପ । ଉଭୟଙ୍କର ସଚେତନତା ଉପରେ ଦେଶ ଓ ଦଶର ଉନ୍ନତି ନିର୍ଭର କରୁଛି । କୌଣସି ଛାତ୍ରର ଅକୃତକାର୍ଯ୍ୟତା ତା'ର ଅସାମର୍ଥ୍ୟର ସଙ୍କେତ ହୋଇ ନ ପାରେ । କେବଳ ଜଣେ ଛାତ୍ରକୁ ଯାହା ଭଲ ଲାଗିବ ସେ ତାହା କରିବା ଉଚିତ ନୁହେଁ । ବରଂ ଯାହା କରାଯିବା ଦରକାର ପୂର୍ଣ୍ଣମନରେ ସେ ତାହାହିଁ କରିବା ଉଚିତ । କ'ଣ କରିବା ଉଚିତ୍ ଆଉ କଣ କରିବା ଉଚିତ ନୁହେଁ—ତାହା ସମସ୍ତେ ଠିକ୍ ସମୟରେ ଧାର୍ଯ୍ୟ କରିପାରନ୍ତି ନାହିଁ । ଏହି ଉପଯୁକ୍ତ ସମୟରେହିଁ 'ଗୁରୁ'ଙ୍କ ଆବଶ୍ୟକତା ପଡ଼ିଥାଏ । ପରସ୍ପର ପରସ୍ପରର ଯଥାର୍ଥ ଆବଶ୍ୟକତା ଲୋଡ଼ିପାରିଲେ ଉଭୟର ଯଥାର୍ଥତା ପ୍ରତିପାଦିତ ହୋଇଥାଏ । ଆତ୍ମା—ନିରୀକ୍ଷାରୁ ପ୍ରତ୍ୟେକ ତାହା ଅନୁଭବ କରିବା ଉଚିତ୍ ଯେ Right attitude is the first condition to make the life on earth smooth and profitable. ଅଧୁନାତନ ସମାଜରେ ଶିକ୍ଷାର ଏ ପ୍ରକାର କଦର୍ଥ ରୂପରେ ପୁରାତନ ଗୁରୁକୁଳ ଶିକ୍ଷାଶ୍ରମ ବ୍ୟବସ୍ଥା ମଧ୍ୟ ଲୋପ ହୋଇ ଯାଇଛି । ଚିନ୍ତନ ସ୍ତରରେ କେବେ ସେହି 'old is gold' ପରମ୍ପରାକୁ ମାନସ ପଟରେ ସ୍ଥାନ ଦେଇ ହେଉ ନାହିଁ । ଆଜିର ଏ ଜଡ଼ବାଦୀ ଦୁନିଆଁ ରେ ଯେ ଯାହାର ଦୃଷ୍ଟିକୋଣରେ ନିଜ ନିଜର ଲାଭ ପାଇଁ ଆଖିବୁଜା ଦୌଡ଼ ପ୍ରତି ଯୋଗିତାରେ ଜଣେ ଜଣେ ଖେଳୁଆଡ । ହେ କ୍ଷେତ୍ରୀୟ ବନ୍ଧୁମାନେ ! ଏହି ଅନ୍ତଃସାରଶୂନ୍ୟ ଦୌଡ଼ ପ୍ରତିଯୋଗିତାରେ ନିଜକୁ ଅନ୍ତର୍ଭୁକ୍ତ କରିବା ପୂର୍ବରୁ କେବେ ଥରେ ଚିନ୍ତା କରିଛନ୍ତିକି ? ଖେଳ କ'ଣ କେବଳ ଖେଳିବା ପାଇଁ ଖେଳା ଯାଇଥାଏ ? ଦୁରଭିସନ୍ଧିମୂଳକ ମନୋବୃତ୍ତି ପରିହାର କରିବା ପୂର୍ବକ ଏପରି ଏକ ଅପବିତ୍ର ବିସ୍ମରଣୀୟ ଛିନ୍ନପୃଷ୍ଠାର ସଂକୀର୍ଣ୍ଣ ବିଗତ ଜୀବନର ଡଷ୍ଟବିନ୍‌ରେ ଫିଙ୍ଗି ନୂତନ ଜୀବନର ସୁଧାର ଚେତନା ସହ ଶିକ୍ଷା କ୍ଷେତ୍ରରେ ଏକ ପୂର୍ଣ୍ଣ, ସଫଳିକୃତ, ସାର୍ଥକ ପଟ୍ଟଭୂମି ପ୍ରସ୍ତୁତି କରିବାକୁ ଶତତ ଚେଷ୍ଟିତ ହେଲେ—ତାହା ସେହି ମହାନ୍ ଆତ୍ମାଙ୍କ ସ୍ମରଣାର୍ଥେ ପାଳିତ ହେଉଥିବା ଗୁରୁଦିବସ ପାଇଁ ହେବ ଏକ ପୂଜାର୍ହ ପୁଷ୍ପାଞ୍ଜଳୀ ।

ଗ୍ରା/ପୋ :—କଣ୍ଠରାଗଡ଼ିଆ
ଭାୟା :—ଘଣ୍ଟେଶ୍ୱର
ଜିଲ୍ଲା :—ବାଲେଶ୍ୱର



ଡ଼ଃ. ନବୀନ କୁମାର ସାହୁ

ଆବିର୍ଭାବ : ଅଗଷ୍ଟ ୨୨, ୧୯୨୦

ତିରୋଭାବ : ସେପ୍ଟେମ୍ବର ୧, ୧୯୮୪

ସଂକ୍ଷେପରେ ନିର୍ବାଚନ ଫଳାଫଳ

# ୧୯୮୫ ଓଡ଼ିଶା ବିଧାନସଭା ନିର୍ବାଚନ

ଓଡିଶା ବିଧାନସଭାର ୧୪୭ଟି ଆସନ ମଧ୍ୟରୁ ୧୪୫ଟି ଆସନ ପାଇଁ ଗତ ମାର୍ଚ୍ଚ ମାସ ୫ ତାରିଖରେ ଭୋଟ ଗ୍ରହଣ କରାଯାଇଥିଲା । ପୁରୀ ଜିଲାର କାକଟପୁର ନିର୍ବାଚନ ମଣ୍ଡଳୀ ଓ କେନ୍ଦୁଝର ଜିଲାର କେନ୍ଦୁଝର ଆଦିବାସୀ ସଂରକ୍ଷିତ ନିର୍ବାଚନ ମଣ୍ଡଳୀର ୨ଜଣ ପ୍ରାର୍ଥୀଙ୍କର ଅକାଳ ବିୟୋଗ ଯୋଗୁଁ ନିୟମାନୁଯାୟୀ ଏହି ଦୁଇଟି ଆସନ ପାଇଁ ନିର୍ବାଚନ ସ୍ଥଗିତ ରଖାଯାଇଥିଲା । ଏହି ୧୪୫ଟି ନିର୍ବାଚନ ମଣ୍ଡଳୀ ମଧ୍ୟରୁ ୨୨ଗୋଟି ହରିଜନ ସଂରକ୍ଷିତ, ୩୩ ଗୋଟି ଆଦିବାସୀ ସଂରକ୍ଷିତ ଓ ୯୦ ଗୋଟି ସାଧାରଣ ନିର୍ବାଚନ ମଣ୍ଡଳୀ ଅଟେ ଏବଂ ଏଥିପାଇଁ ସର୍ବମୋଟ ୭୯୩ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରୁଥିଲେ । ବିଜୟୀ ପ୍ରାର୍ଥୀ ଓ ନିକଟତମ ପ୍ରତିଦ୍ୱନ୍ଦୀଙ୍କୁ ନେଇ ଅତି ସଂକ୍ଷେପରେ ନିର୍ବାଚନର ଫଳାଫଳ ନିମ୍ନରେ ପ୍ରଦର୍ଶିତ ହୋଇଛି—

## ମୟୂରଭଞ୍ଜ ଜିଲ୍ଲା

୧ କରଞ୍ଜିଆ (ଆଦିବାସୀ ସଂରକ୍ଷିତ)

ଭୋଟଦାନ — ୩୫,୦୪୨
ପ୍ରତିଦ୍ୱନ୍ଦୀ — ୩ ଜଣ
ଶ୍ରୀ କରୁଣାକର ନାୟକ (କଂଗ୍ରେସ)—୧୫,୪୪୬
ଶ୍ରୀ ରଘୁନାଥ ହେମ୍ବ୍ରମ (ଜନତା) —୧୪,୯୦୩

୨ ଯଶିପୁର (ଆ: ସଂ:)

ଭୋଟଦାନ — ୩୫,୬୫୩
ପ୍ରତିଦ୍ୱନ୍ଦୀ — ୮ ଜଣ
ଶ୍ରୀ ଶମ୍ଭୁନାଥ ନାୟକ (ସ୍ୱାଧୀନ) — ୮,୮୯୫
ଶ୍ରୀମତୀ ଶୁଶୀଳା ଛାୟା (ମ) (କଂଗ୍ରେସ)—୮,୧୦୯

୩ ବହଳଦା (ଆ: ସଂ:)

ଭୋଟଦାନ — ୩୨,୭୯୩
ପ୍ରତିଦ୍ୱନ୍ଦୀ — ୫ ଜଣ
ଶ୍ରୀ ଭାଗେ ଗୋବର୍ଦ୍ଧନ (ଜନତା)—୧୯,୮୨୧
ଶ୍ରୀ ଲକ୍ଷ୍ମଣ ମାଝୀ (କଂଗ୍ରେସ)—୮,୨୯୬

୪ ରାଇରଙ୍ଗପୁର—(ଆ: ସଂ:)

ଭୋଟଦାନ — ୩୫,୮୬
ପ୍ରତିଦ୍ୱନ୍ଦୀ — ୫ ଜଣ
ଶ୍ରୀ ଭବେନ୍ଦ୍ରନାଥ ମାଝୀ (କଂଗ୍ରେସ)—୧୭,୩୬୯
ଶ୍ରୀ ସୁଦର୍ଶନ ମୁର୍ମୁ (ବି. ଜେ. ପି.) — ୬,୮୪୦

୫ ବାଙ୍ଗିରିପୋଷୀ— (ଆ: ସଂ:)

ଭୋଟଦାନ — ୩୧,୧୩୮
ପ୍ରତିଦ୍ୱନ୍ଦୀ — ୧୦ ଜଣ
ଶ୍ରୀ କାନ୍ ଗୋଇ ସିଂହ (କଂଗ୍ରେସ) — ୧୧,୨୭୯
ଶ୍ରୀ ଭୀମ ଚରଣ ନାୟକ (ସି. ପି. ଆଇ.)—୫,୪୮୯

୬ କୁଳିଅଣା (ଆ: ସଂ:)

ଭୋଟଦାନ — ୩୫,୪୯୦
ପ୍ରତିଦ୍ୱନ୍ଦୀ — ୬ ଜଣ
ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ (ମ) (କଂଗ୍ରେସ)—୧୯,୨୦୪
ଶ୍ରୀ କାହ୍ନୁଚରଣ ସୋରେନ (ଜନତା)—୫,୭୬୫

୭ ବାରିପଦା

ଭୋଟଦାନ — ୫୫,୩୩୭
ପ୍ରତିଦ୍ୱନ୍ଦୀ — ୭ ଜଣ
ଶ୍ରୀ ପ୍ରସନ୍ନ କୁମାର ଦାଶ (କଂଗ୍ରେସ) — ୨୯,୭୨୩
ଶ୍ରୀ ସତିଶ ଚନ୍ଦ୍ର ଧଳ (ସ୍ୱାଧୀନ) — ୧୧,୬୯୫

୮ ବଇସିଙ୍ଗା—(ଆ. ସଂ)

ଭୋଟଦାନ—୪୦,୮୬୦
ପ୍ରତିଦ୍ୱନ୍ଦୀ—୩ ଜଣ
ଶ୍ରୀ ପୁରୁନାଥ ଟିଗୁ (କଂଗ୍ରେସ)—୨୭,୨୫୨
ଶ୍ରୀ ଗଙ୍ଗାଧର ମରାଣ୍ଡି, ସି. ପି . ଆଇ. (ଏମ୍.)—୮,୧୩୫

୯ କୁଶ୍ଣା (ଆ. ସଂ)

ଭୋଟଦାନ—୪୨,୦୩୬
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ବିରାମ ମୁର୍ମୁ (କଂଗ୍ରେସ)—୨୧,୯୬୯
ଶ୍ରୀ ବୀରଭଦ୍ର ସିଂହ (ଜନତା)—୧୫,୮୩୬

୧୦ ଭନ୍ଦହା (ଆ: ସଂ:)

ଭୋଟଦାନ—୩୩,୮୬୫
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ରାବଣେଶ୍ୱର ମଣ୍ଡଳ (କଂଗ୍ରେସ)—୧୫,୧୫୫
ଶ୍ରୀ ରୋହିଦାସ ସୋରେନ (ଜନତା)—୧୧,୬୫୯

## ବାଲେଶ୍ୱର ଜିଲ୍ଲା

୧୧ ଭୋଗରାଇ

ଭୋଟଦାନ—୭୮,୪୮୦
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀମତୀ ଉମାରାଣୀ ପାତ୍ର (ମ) (କଂଗ୍ରେସ)—୩୬,୩୬୯
ଶ୍ରୀ ସମରେନ୍ଦ୍ର କୁଣ୍ଡୁ (ଜନତା)—୩୩,୬୦୨

୧୨ ଜଳେଶ୍ୱର

ଭୋଟଦାନ—୮୬,୪୬୯
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ଯୁଧିଷ୍ଠିର ଜେନା (କଂଗ୍ରେସ)—୪୨,୦୧୫
ଶ୍ରୀ ଗଦାଧର ଗିରି (ଜନତା)—୪୧,୬୭୩

୧୩ ବସ୍ତା

ଭୋଟଦାନ—୬୫,୨୧୫
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର (କଂଗ୍ରେସ)—୪୩,୭୨୨
ଶ୍ରୀ ଶମ୍ଭୁନାଥ ମହାନ୍ତି (ସି. ପି. ଆଇ.)—୧୦,୯୮୫

୧୪ ବାଲେଶ୍ୱର

ଭୋଟଦାନ—୭୬,୭୮୧
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ଗୋପନାରାୟଣ ଦାସ (କଂଗ୍ରେସ)—୩୫,୮୩୦
ଶ୍ରୀ ଅରୁଣ ଦେ (ସି. ପି. ଆଇ.)—୩୫,୭୬୧

୧୫ ସୋରୋ

ଭୋଟଦାନ—୬୬,୪୨୧
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ଯଦୁନାଥ ଦାଶ ମହାପାତ୍ର (କଂଗ୍ରେସ)—୪୨,୮୫୧
ଶ୍ରୀ ପିତାମ୍ବର ପଣ୍ଡା (ସି. ପି. ଆଇ.)—୧୪,୯୬୦

୧୬ ସିମୁଳିଆ

ଭୋଟଦାନ—୫୨,୪୬୩
ପ୍ରତିଦ୍ୱନ୍ଦ୍ୱୀ—୯ ଜଣ
ଶ୍ରୀ ପଦ୍ମଲୋଚନ ପଣ୍ଡା (କଂଗ୍ରେସ)—୨୪,୨୩୧
ଶ୍ରୀ ପର୍ଶୁରାମ ପାଣିଗ୍ରାହୀ—(ଜନତା)—୧୬,୨୬୨

୧୭ ନୀଳଗିରି

ଭୋଟଦାନ—୬୬,୨୨୬
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ସୁକୁମାର ନାୟକ (କଂଗ୍ରେସ)—୨୭,୨୯୯
ଶ୍ରୀ ପ୍ରଦୀପ୍ତ କୁମାର ପଣ୍ଡା, ସି.ପି.ଆଇ.(ଏମ୍)—୧୮,୨୧୬

୧୮ ଭଣ୍ଡାରୀ ପୋଖରୀ (ହରିଜନ ସଂରକ୍ଷିତ)

ଭୋଟଦାନ—୬୫,୧୮୪
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ପଞ୍ଚାନନ ମଣ୍ଡଳ (କଂଗ୍ରେସ)—୨୭,୩୪୨
ଶ୍ରୀ ଅର୍ଜ୍ଜୁନ ଚରଣ ସେଠୀ (ଜନତା)—୨୬,୩୨୦

୧୯ ଭଦ୍ରକ

ଭୋଟଦାନ—୭୪,୦୩୦
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ (କଂଗ୍ରେସ)—୩୫,୧୮୧
ଶ୍ରୀ ନୀଳମଣି ରାଉତରାୟ (ଜନତା)—୨୮,୬୩୬

୨୦ ଧାମନଗର

ଭୋଟଦାନ—୭୧,୪୮୨
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ଜଗନ୍ନାଥ ରାଉତ (କଂଗ୍ରେସ)—୩୫,୨୩୮
ଶ୍ରୀ ହୃଦାନନ୍ଦ ମଲ୍ଲିକ (ଜନତା)—୨୯,୩୫୦

୨୧ ଚାନ୍ଦବାଲି (ହ: ସଂ:)

ଭୋଟଦାନ—୭୫,୭୦୪
ପ୍ରତିଦ୍ୱନ୍ଦ୍ୱୀ—୩ ଜଣ
ଶ୍ରୀ ନେତ୍ରାନନ୍ଦ ମଲ୍ଲିକ (କଂଗ୍ରେସ)—୩୮,୯୬୩
ଶ୍ରୀ ବୈରାଗୀ ଜେନା (ଜନତା)—୩୩,୬୮୨

୨୨ ବାସୁଦେବପୁର

ଭୋଟଦାନ—୭୩,୨୬୬
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ମଧୁସୂଦନ ପାଣିଗ୍ରାହୀ (କଂଗ୍ରେସ)—୩୫,୧୫୩
ଶ୍ରୀ ବିଜୟଶ୍ରୀ ରାଉତରାୟ (ଜନତା)—୩୪,୯୫୮

# କଟକ ଜିଲ୍ଲା

୨୩ ସୁକିନ୍ଦା

ଭୋଟଦାନ—୬୦,୭୦୬
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ଶରତ ରାଉତ (କଂଗ୍ରେସ)—୨୬,୮୩୬
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ (ଜନତା)—୨୧,୪୮୯

୨୪ କୋରେଇ

ଭୋଟଦାନ—୭୬,୬୭୦
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ (କଂଗ୍ରେସ)—୩୬,୧୦୨
ଶ୍ରୀ ଅଶୋକ ଦାସ (ଜନତା)—୩୪,୮୦୮

୨୫ ଯାଜପୁର (ହ: ସଂ:)

ଭୋଟଦାନ—୬୪,୩୮୨
ପ୍ରତିଦ୍ୱନ୍ଦୀ—୨ ଜଣ
ଶ୍ରୀ ଜଗନ୍ନାଥ ମଲ୍ଲିକ (ଜନତା)—୩୨,୯୧୮
ଶ୍ରୀ ନିରଞ୍ଜନ ଜେନା (କଂଗ୍ରେସ)—୩୦,୩୦୯

୨୬ ଧର୍ମଶାଳା

ଭୋଟଦାନ—୬୫,୯୭୯
ପ୍ରତିଦ୍ୱନ୍ଦୀ—୮ ଜଣ
ଶ୍ରୀ କାଙ୍ଗାଳି ଚରଣ ପଣ୍ଡା (କଂଗ୍ରେସ)—୩୧,୫୯୦
ଶ୍ରୀ ଗୁରୁଚରଣ ଟିକାୟତ (ଜନତା)—୨୪,୨୨୭

୨୭ ବଡ଼ଚଣା

ଭୋଟଦାନ—୭୪,୪୪୦
ପ୍ରତିଦ୍ୱନ୍ଦୀ—୧୦ ଜଣ
ଶ୍ରୀ ସୀତାକାନ୍ତ ମହାପାତ୍ର (କଂଗ୍ରେସ)—୪୪,୩୬୩
ଶ୍ରୀ ମାନଗୋବିନ୍ଦ ସାମଲ (ଜନତା)—୧୬,୯୨୬

୨୮ ବରିଡେରାବିସି

ଭୋଟଦାନ—୭୧,୩୪୬
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ଶ୍ରୀକାନ୍ତ କୁମାର ଜେନା (ଜନତା)—୩୭,୬୧୫
ଶ୍ରୀ ପ୍ରହଲ୍ଲାଦ ମଲ୍ଲିକ (କଂଗ୍ରେସ)—୩୦,୫୩୯

୨୯ ବିଂଝାରପୁର (ହରିଜନ ସଂରକ୍ଷିତ)

ଭୋଟଦାନ—୪୯,୯୩୮
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ନବକିଶୋର ମଲ୍ଲିକ (କଂଗ୍ରେସ)—୨୨,୧୯୫
ଶ୍ରୀ ରାମଚନ୍ଦ୍ର ମଲ୍ଲିକ (ଜନତା)—୧୮,୫୬୧

୩୦ ଆଳି

ଭୋଟଦାନ—୭୯,୨୩୬
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ଦୋଳଗୋବିନ୍ଦ ନାୟକ (କଂଗ୍ରେସ)—୪୦,୮୩୨
ଶ୍ରୀ ଶରତ କୁମାର ଦେବ (ଜନତା)—୩୬,୪୮୪

୩୧ ପତ୍ତାମୁଣ୍ଡାଇ (ହ: ସଂ:)

ଭୋଟଦାନ—୫୭,୯୭୫
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ଗଣେଶ୍ୱର ବେହେରା (କଂଗ୍ରେସ)—୨୮,୯୩୮
ଶ୍ରୀ ରବୀନ୍ଦ୍ର କୁମାର ବେହେରା
ସି. ପି. ଆଇ. (ଏମ୍.)—୧୩,୬୪୪

୩୨ ରାଜନଗର

ଭୋଟଦାନ—୭୯,୨୨୦
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ନଳିନୀକାନ୍ତ ମହାନ୍ତି (ଜନତା)—୩୯,୯୪୬
ଶ୍ରୀ ବିଜୟ କୁମାର ପ୍ରଧାନ (କଂଗ୍ରେସ)—୩୫,୯୨୫

୩୩ କେନ୍ଦ୍ରାପଡ଼ା

ଭୋଟଦାନ—୭୨,୮୦୮
ପ୍ରତିଦ୍ୱନ୍ଦୀ—୭ ଜଣ
ଶ୍ରୀ ଭାଗବତ ପ୍ରସାଦ ମହାନ୍ତି (କଂଗ୍ରେସ)—୩୪,୮୩୪
ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲା (ଜନତା)—୩୨,୧୮୩

୩୪ ପାଟକୁରା

ଭୋଟଦାନ—୬୫,୩୦୯
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ବିଜୟ ମହାପାତ୍ର (ଜନତା)—୩୧.୫୪୪
ଶ୍ରୀ ପ୍ରତାପ ଚନ୍ଦ୍ର ଜେନା (କଂଗ୍ରେସ)—୩୧,୦୯୫

୩୫ ତିର୍ତୋଲ

ଭୋଟଦାନ— ୮୨,୬୬୭
ପ୍ରତିଦ୍ୱନ୍ଦୀ—୩ ଜଣ
ଶ୍ରୀ ନିତ୍ୟାନନ୍ଦ ସାମନ୍ତରାୟ (କଂଗ୍ରେସ)—୫୮,୩୨୩
ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି (ଜନତା) —୨୧,୮୮୩

୩୬ ଏରସମା

ଭୋଟଦାନ—୯୨,୩୭୮
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ କୃଷ୍ଣ ଚନ୍ଦ୍ର ସ୍ୱାଇଁ (କଂଗ୍ରେସ)—୩୭,୫୧୦
ଶ୍ରୀ ଡକଟର ଦାମୋଦର ରାଉତ (ଜନତା)—୩୨,୯୨୪

୩୭ ବାଲିକୁଦା

ଭୋଟଦାନ—୭୪,୮୮୧
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ଜ୍ୟୋତିଷ ଚନ୍ଦ୍ର ଦାସ (କଂଗ୍ରେସ)—୩୮,୪୪୩
ଶ୍ରୀ ଉମେଶ ଚନ୍ଦ୍ର ସ୍ୱାଇଁ (ଜନତା)—୩୧,୨୦୯

୩୮ ଜଗତସିଂହପୁର (ହ: ସଂ:)

ଭୋଟଦାନ—୬୬,୬୬୬
ପ୍ରତିଦ୍ୱନ୍ଦ୍ୱୀ—୩ ଜଣ
ଶ୍ରୀ କୈଳାଶ ଚନ୍ଦ୍ର ମଲ୍ଲିକ (କଂଗ୍ରେସ)—୩୪,୯୦୫
ଶ୍ରୀ ବିଷ୍ଣୁଚରଣ ଦାସ (ଜନତା)—୨୬,୮୧୯

୩୯ କିଶନ ନଗର

ଭୋଟଦାନ—୬୧,୮୭୭
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ବଟକୃଷ୍ଣ ଜେନା (କଂଗ୍ରେସ)—୩୦,୩୪୧
ଶ୍ରୀ ବୀରକିଶୋର ପରିଡ଼ା (ସ୍ୱାଧୀନ)—୧୫,୦୪୧

୪୦ ମାହାଙ୍ଗା

ଭୋଟଦାନ—୬୮,୧୯୦
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ସେଖ୍ ମତଲୁବ ଅଲ୍ଲି (କଂଗ୍ରେସ)—୩୫,୪୨୫
ଶ୍ରୀ ଶରତ କୁମାର କର (ଜନତା)—୨୭,୧୩୧

୪୧ ସାଲେପୁର (ହରିଜନ ସଂରକ୍ଷିତ)

ଭୋଟଦାନ—୫୯,୨୨୯
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ମାୟାଧର ସେଠୀ (କଂଗ୍ରେସ)—୨୯,୬୩୦
ଶ୍ରୀ କାଳନ୍ଦୀ ବେହେରା (ଜନତା)—୨୨,୫୦୮

୪୨ ଗୋବିନ୍ଦପୁର

ଭୋଟଦାନ—୭୬,୧୮୧
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ (ସ୍ୱାଧୀନ)—୩୪,୬୩୫
ଶ୍ରୀ ରବୀନ୍ଦ୍ର କୁମାର ମଲ୍ଲିକ (କଂଗ୍ରେସ)—୩୩,୨୫୨

୪୩ କଟକ ସଦର

ଭୋଟଦାନ—୬୬,୨୪୧
ପ୍ରତିଦ୍ୱନ୍ଦ୍ୱୀ—୯ ଜଣ
ଶ୍ରୀ ଦୋଳଗୋବିନ୍ଦ ପ୍ରଧାନ (କଂଗ୍ରେସ)—୩୪,୦୫୯
ଶ୍ରୀ ରାଜେନ୍ଦ୍ର ସିଂହ (ଜନତା)—୨୫,୭୦୩

୪୪ କଟକ ସିଟି

ଭୋଟଦାନ—୬୧,୨୫୨
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ସୟଦ ମୁସ୍ତାଫିଜ୍ ଅହମ୍ମଦ୍ (ଜନତା)—୩୧,୧୩୭
ଶ୍ରୀ ଆଶୀର୍ବାଦ ବେହେରା (କଂଗ୍ରେସ)—୨୩,୨୦୦

୪୫ ଚୌଦ୍ୱାର

ଭୋଟଦାନ—୬୧,୭୯୫
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ରସାନନ୍ଦ ସାହୁ (କଂଗ୍ରେସ)—୩୧,୧୫୯
ଶ୍ରୀ ରାଜ କିଶୋର ରାମ (ଜନତା)—୨୭,୮୬୬

୪୬ ବାଙ୍କୀ

ଭୋଟଦାନ—୬୦,୯୨୮
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ (କଂଗ୍ରେସ)—୩୬,୮୨୫
ଶ୍ରୀ ଘନଶ୍ୟାମ ସାହୁ (ଜନତା)—୧୭,୮୭୮

୪୭ ଆଠଗଡ଼

ଭୋଟଦାନ—୫୫,୪୧୩
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ)—୪୬,୨୦୦
ଶ୍ରୀ ସୂର୍ଯ୍ୟନାରାୟଣ ମିଶ୍ର (ଜନତା)—୩,୮୧୯

୪୮ ବଡ଼ମ୍ବା

ଭୋଟଦାନ—୬୦,୦୧୫
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଡକ୍ଟର ଲଳିତ ମୋହନ ମହାନ୍ତି (କଂଗ୍ରେସ)—୩୩,୧୮
ରାଜା ସାହେବ ତ୍ରିଲୋଚନ ସିଂହଦେବ (ସ୍ୱାଧୀନ)—୨୧,୫୧୨

## ପୁରୀ ଜିଲ୍ଲା

୪୯ ବାଲିପାଟଣା (ହ: ସଂ:)

ଭୋଟଦାନ—୪୯,୯୮୩
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ରାଘବ ଚନ୍ଦ୍ର ସେଠୀ (କଂଗ୍ରେସ)—୨୨,୫୯୫
ଶ୍ରୀ ହୃଷିକେଶ ନାଏକ (ଜନତା)—୨୨,୦୮୧

୫୦ ଭୁବନେଶ୍ୱର

ଭୋଟଦାନ—୬୩,୯୮୩
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ବିଜୁ ପଟ୍ଟନାୟକ (ଜନତା)—୪୩.୪୯୫
ଶ୍ରୀ ସତ୍ୟପ୍ରିୟ ମହାନ୍ତି (କଂଗ୍ରେସ)—୧୫,୧୬୨

୫୧ ଜଟଣୀ

ଭୋଟଦାନ—୬୦,୪୭୯
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ସୁରେଶ କୁମାର ରାଉତରାୟ (କଂଗ୍ରେସ)—୨୭,୫୬୭
ଶ୍ରୀ ଶରତ ଚନ୍ଦ୍ର ପାଇକରା (ଜନତା)—୨୪,୮୮୧

୫୨ ପିପିଲି

ଭୋଟଦାନ— ୬୦,୦୮୮
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ପ୍ରଦୀପ କୁମାର ମହାରଥୀ (ଜନତା)—୨୫,୬୯୮
ଶ୍ରୀ ବିପିନ ଦାଶ (କଂଗ୍ରେସ)—୨୫,୩୫୯

୫୩ ନିମାପଡ଼ା (ହ: ସଂ:)

ଭୋଟଦାନ—୭୧,୨୫୪
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ରବୀନ୍ଦ୍ରକୁମାର ସେଠୀ (କଂଗ୍ରେସ)—୨୮,୧୪୩
ଶ୍ରୀ ବେଣୁଧର ସେଠୀ (ଜନତା)—୨୧,୫୧୦

୫୪–କାକଟପୁର—[illegible]

୫୫–ସତ୍ୟବାଦୀ

ଭୋଟଦାନ—୫୯,୪୦୭
ପ୍ରତିଦ୍ୱନ୍ଦ୍ୱୀ—୪ଜଣ
ଶ୍ରୀ ରବୀନ୍ଦ୍ରକୁମାର ଦାସ (କଂଗ୍ରେସ)—୩୦,୭୧୧
ଶ୍ରୀ ଚନ୍ଦ୍ରମାଧବ ମିଶ୍ର (ଜନତା)—୨୩,୮୬୨

୫୬–ପୁରୀ

ଭୋଟଦାନ—୬୭,୫୪୫
ପ୍ରତିଦ୍ୱନ୍ଦ୍ୱୀ—୬ଜଣ
ଶ୍ରୀ ବ୍ରଜକିଶୋର ତ୍ରିପାଠୀ (ଜନତା)—୩୩,୫୬୧
ଶ୍ରୀ ଗଦାଧର ମିଶ୍ର (କଂଗ୍ରେସ)— ୨୯,୨୪୭

୫୭–ବ୍ରହ୍ମଗିରି

ଭୋଟଦାନ—୬୬,୩୮୯
ପ୍ରତିଦ୍ୱନ୍ଦ୍ୱୀ—୬ଜଣ
ଶ୍ରୀ ଗଙ୍ଗାଧର ମହାପାତ୍ର (କଂଗ୍ରେସ)—୩୦,୫୯୧
ଶ୍ରୀ ଅଜୟକୁମାର ଜେନା (ଜନତା)—୨୦,୬୧୦

୫୮–ଚିଲିକା

ଭୋଟଦାନ—୭୩,୩୪୬
ପ୍ରତିଦ୍ୱନ୍ଦ୍ୱୀ—୪ଜଣ
ଡକ୍ଟର ଦେବେନ୍ଦ୍ରନାଥ ମାନସିଂହ (କଂଗ୍ରେସ)—୩୯,୫୩୦
ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ (ବି.ଜେ.ପି.)—୩୦,୦୩୭

୫୯–ଖୋର୍ଦ୍ଧା ।

ଭୋଟଦାନ—୫୮,୬୮୬
ପ୍ରତିଦ୍ୱନ୍ଦ୍ୱୀ—୫ଜଣ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ)—୩୮,୯୬୬
ଶ୍ରୀ ପ୍ରଫୁଲ୍ଲ ମହାନ୍ତି (ଜନତା)—୧୪,୭୨୧

୬୦–ବେଗୁନିଆ

ଭୋଟଦାନ—୬୬,୯୭୬
ପ୍ରତିଦ୍ୱନ୍ଦ୍ୱୀ—୮ଜଣ
ଶ୍ରୀ କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ)—୩୯,୫୬୫
ଶ୍ରୀ ହରିହର ସାହୁ (ଜନତା)—୧୧,୬୯୪

୬୧–ରଣପୁର

ଭୋଟଦାନ—୬୫,୧୫୪
ପ୍ରତିଦ୍ୱନ୍ଦ୍ୱୀ—୫ଜଣ
ଶ୍ରୀ ରମାକାନ୍ତ ମିଶ୍ର(କଂଗ୍ରେସ)—୪୦,୬୪୨
ଶ୍ରୀମତୀ ଶାନ୍ତିଦାସ (ମ) (ଜନତା)—୧୨,୯୬୧

୬୨–ନୟାଗଡ଼

ଭୋଟଦାନ—୬୭,୩୦୧
ପ୍ରତିଦ୍ୱନ୍ଦ୍ୱୀ—୬ଜଣ
ଶ୍ରୀ ଭାଗବତ ବେହେରା (ଜନତା)—୩୨,୯୬୨
ଶ୍ରୀ ବଂଶୀଧର ସାହୁ (କଂଗ୍ରେସ)—୨୮,୭୫୭

୬୩–ଖଣ୍ଡପଡ଼ା

ଭୋଟଦାନ—୬୬,୭୧୫
ପ୍ରତିଦ୍ୱନ୍ଦ୍ୱୀ—୩ଜଣ
ଶ୍ରୀ ବଭୂତିଭୂଷଣ ସିଂହ ମର୍ଦ୍ଦ ରାଜ (କଂଗ୍ରେସ)—୩୩,୭୬୨
ଶ୍ରୀ ମହେନ୍ଦ୍ରକୁମାର ସ୍ୱାଇଁ (ସ୍ୱାଧୀନ)—୨୨,୯୯୭

୬୪–ଦଶପଲ୍ଲା

ଭୋଟଦାନ—୬୬,୮୧୪
ପ୍ରତିଦ୍ୱନ୍ଦ୍ୱୀ—୪ଜଣ
ଶ୍ରୀ ହରିହର କରଣ (କଂଗ୍ରେସ)—୩୭,୯୨୯
ଶ୍ରୀ ରୁଦ୍ରମାଧବ ରାୟ (ଜନତା)—୨୫,୧୫୯

## ଗଞ୍ଜାମ ଜିଲ୍ଲା

୬୫–ଜଗନ୍ନାଥପ୍ରସାଦ (ହ: ସଂ:)

ଭୋଟଦାନ—୩୫,୬୬୭
ପ୍ରତିଦ୍ୱନ୍ଦ୍ୱୀ—୨ଜଣ
ଶ୍ରୀ ଡମ୍ବରୁଧର ସେଠୀ (କଂଗ୍ରେସ)—୨୭,୦୫୭
ଶ୍ରୀ ସୁରେନ୍ଦ୍ରନାଥ ପାତ୍ର (ଜନତା)—୭,୯୪୫

୩୭ ବାଲିକୁଦା

ଭୋଟଦାନ—୬୪,୮୮୧
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ଜ୍ୟୋତିଷ ଚନ୍ଦ୍ର ଦାସ (କଂଗ୍ରେସ)—୩୮,୪୪୩
ଶ୍ରୀ ଉମେଶ ଚନ୍ଦ୍ର ସ୍ୱାଇଁ (ଜନତା)—୩୧,୨୦୯

୩୮ ଜଗତସିଂହପୁର (ହ: ସଂ:)

ଭୋଟଦାନ—୬୬,୬୬୬
ପ୍ରତିଦ୍ୱନ୍ଦ୍ୱୀ—୩ ଜଣ
ଶ୍ରୀ କୈଳାଶ ଚନ୍ଦ୍ର ମଲ୍ଲିକ (କଂଗ୍ରେସ)—୩୪,୯୦୫
ଶ୍ରୀ ବିଷ୍ଣୁ ଚରଣ ଦାସ (ଜନତା)—୨୬,୮୧୯

୩୯ କିଶନ ନଗର

ଭୋଟଦାନ—୬୧,୮୭୭
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ବଟକୃଷ୍ଣ ଜେନା (କଂଗ୍ରେସ)—୩୦,୩୪୧
ଶ୍ରୀ ବୀରକିଶୋର ପରିଡ଼ା (ସ୍ୱାଧୀନ)—୧୫,୦୪୧

୪୦ ମାହାଙ୍ଗା

ଭୋଟଦାନ—୬୮,୧୯୦
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ସେଖ୍ ମତଲୁବ ଅଲ୍ଲି (କଂଗ୍ରେସ)—୩୫,୪୨୫
ଶ୍ରୀ ଶରତ କୁମାର କର (ଜନତା)—୨୭,୧୩୧

୪୧ ସାଲେପୁର (ହରିଜନ ସଂରକ୍ଷିତ)

ଭୋଟଦାନ—୫୯,୨୨୯
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ମାୟାଧର ସେଠୀ (କଂଗ୍ରେସ)—୨୯,୬୩୦
ଶ୍ରୀ କାଳନ୍ଦୀ ବେହେରା (ଜନତା)—୨୨,୫୦୮

୪୨ ଗୋବିନ୍ଦପୁର

ଭୋଟଦାନ—୭୬,୮୮୧
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ (ସ୍ୱାଧୀନ)—୩୪,୬୩୫
ଶ୍ରୀ ରବୀନ୍ଦ୍ର କୁମାର ମଲ୍ଲିକ (କଂଗ୍ରେସ)—୩୩,୨୫୭

୪୩ କଟକ ସଦର

ଭୋଟଦାନ—୬୬,୨୪୧
ପ୍ରତିଦ୍ୱନ୍ଦ୍ୱୀ—୯ ଜଣ
ଶ୍ରୀ ଦୋଳଗୋବିନ୍ଦ ପ୍ରଧାନ (କଂଗ୍ରେସ)—୩୪,୦୫୯
ଶ୍ରୀ ରାଜେନ୍ଦ୍ର ସିଂହ (ଜନତା)—୨୫,୭୦୩

୪୪ କଟକ ସିଟି

ଭୋଟଦାନ—୬୧,୨୫୭
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ସୟଦ ମୁସ୍ତାଫିଜ୍ ଅହମ୍ମଦ୍ (ଜନତା)—୩୧,୧୩୬
ଶ୍ରୀ ଆଶୀର୍ବାଦ ବେହେରା (କଂଗ୍ରେସ)—୨୩,୨୦୦

୪୫ ଚୌଦ୍ୱାର

ଭୋଟଦାନ—୬୧,୭୯୫
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ରସାନନ୍ଦ ସାହୁ (କଂଗ୍ରେସ)—୩୧,୧୫୯
ଶ୍ରୀ ରାଜ କିଶୋର ରାମ (ଜନତା)—୨୭,୮୬୬

୪୬ ବାଙ୍କୀ

ଭୋଟଦାନ—୬୦,୯୨୮
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ (କଂଗ୍ରେସ)—୩୬,୮୨୫
ଶ୍ରୀ ଘନଶ୍ୟାମ ସାହୁ (ଜନତା)—୧୭,୮୨୮

୪୭ ଆଠଗଡ଼

ଭୋଟଦାନ—୫୫,୪୧୩
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ)—୪୬,୨୦୦
ଶ୍ରୀ ସୂର୍ଯ୍ୟନାରାୟଣ ମିଶ୍ର (ଜନତା)—୩,୮୯୯

୪୮ ବଡ଼ମ୍ବା

ଭୋଟଦାନ—୭୦,୦୧୫
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଡକ୍ଟର ଲଳିତ ମୋହନ ମହାନ୍ତି (କଂଗ୍ରେସ)—୩୩,୦୮
ରାଜା ସାହେବ ତ୍ରିଲୋଚନ ସିଂହଦେବ (ସ୍ୱାଧୀନ)—୨୧,୫୯୨

## ପୁରୀ ଜିଲ୍ଲା

୪୯ ବାଲିପାଟଣା (ହ: ସଂ:)

ଭୋଟଦାନ—୪୯,୯୮୩
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ରାଘବ ଚନ୍ଦ୍ର ସେଠୀ (କଂଗ୍ରେସ)—୨୨,୫୯୫
ଶ୍ରୀ ହୃଷିକେଶ ନାଏକ (ଜନତା)—୨୨,୦୮୧

୫୦ ଭୁବନେଶ୍ୱର

ଭୋଟଦାନ—୬୩,୯୮୩
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ବିଜୁ ପଟ୍ଟନାୟକ (ଜନତା)—୪୩.୪୯୫
ଶ୍ରୀ ସତ୍ୟପ୍ରିୟ ମହାନ୍ତି (କଂଗ୍ରେସ)—୧୫,୬୭୨

୫୧ ଜଟଣୀ

ଭୋଟଦାନ—୬୦,୪୭୯
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ସୁରେଶ କୁମାର ଭାଉତରାୟ (କଂଗ୍ରେସ)—୨୭,୫୬୭
ଶ୍ରୀ ଶରତ ଚନ୍ଦ୍ର ପାଇକରା (ଜନତା)—୨୪,୮୮୧

୫୨ ପିପିଲି

ଭୋଟଦାନ— ୬୦,୦୮୮
ପ୍ରତିଦ୍ୱନ୍ଦୀ—୮ ଜଣ
ଶ୍ରୀ ପ୍ରଦୀପ କୁମାର ମହାରଥୀ (ଜନତା)—୨୫,୬୯୮
ଶ୍ରୀ ବିପିନ ଦାଶ (କଂଗ୍ରେସ)—୨୫,୩୫୯

୫୩ ନିମାପଡ଼ା (ହ: ସଂ:)

ଭୋଟଦାନ—୭୧,୨୫୪
ପ୍ରତିଦ୍ୱନ୍ଦୀ—୭ ଜଣ
ଶ୍ରୀ ରବୀନ୍ଦ୍ରକୁମାର ସେଠୀ (କଂଗ୍ରେସ)—୨୮,୧୪୩
ଶ୍ରୀ ବେଣୁଧର ସେଠୀ (ଜନତା)—୨୧,୫୧୦

୫୪—କାକଟପୁର—[illegible]

୫୫—ସତ୍ୟବାଦୀ

ଭୋଟଦାନ—୫୯,୪୦୭
ପ୍ରତିଦ୍ୱନ୍ଦୀ—୪ଜଣ
ଶ୍ରୀ ରବୀନ୍ଦ୍ରକୁମାର ଦାସ (କଂଗ୍ରେସ)—୩୦,୭୧୧
ଶ୍ରୀ ଚନ୍ଦ୍ରମାଧବ ମିଶ୍ର (ଜନତା)—୨୩,୮୬୨

୫୬—ପୁରୀ

ଭୋଟଦାନ—୬୭,୫୪୫
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ବ୍ରଜକିଶୋର ତ୍ରିପାଠୀ (ଜନତା)—୩୩,୫୬୧
ଶ୍ରୀ ଗଦାଧର ମିଶ୍ର (କଂଗ୍ରେସ)— ୨୯,୨୪୭

୫୭—ବ୍ରହ୍ମଗିରି

ଭୋଟଦାନ—୬୬,୩୮୯
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ଗଙ୍ଗାଧର ମହାପାତ୍ର (କଂଗ୍ରେସ)—୩୦,୫୯୧
ଶ୍ରୀ ଅଜୟକୁମାର ଜେନା (ଜନତା)—୨୦,୬୧୦

୫୮—ଚିଲିକା

ଭୋଟଦାନ—୭୩,୩୪୬
ପ୍ରତିଦ୍ୱନ୍ଦୀ—୪ଜଣ
ଡକ୍ଟର ଦେବେନ୍ଦ୍ରନାଥ ମାନସିଂହ (କଂଗ୍ରେସ)—୩୯,୫୩୦
ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ (ବି.ଜେ.ପି.)—୩୦,୦୩୭

୫୯—ଖୋର୍ଦ୍ଧା।

ଭୋଟଦାନ—୫୮,୬୮୬
ପ୍ରତିଦ୍ୱନ୍ଦୀ—୫ଜଣ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ)—୩୮,୯୬୬
ଶ୍ରୀ ପ୍ରଫୁଲ୍ଲ ମହାନ୍ତି (ଜନତା)—୧୪,୭୨୧

୬୦—ବେଗୁନିଆ

ଭୋଟଦାନ—୬୬,୯୬୬
ପ୍ରତିଦ୍ୱନ୍ଦୀ—୮ଜଣ
ଶ୍ରୀ କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ)—୩୯,୫୬୫
ଶ୍ରୀ ହରିହର ସାହୁ (ଜନତା)—୧୧,୬୯୪

୬୧—ରଣପୁର

ଭୋଟଦାନ—୬୫,୧୫୪
ପ୍ରତିଦ୍ୱନ୍ଦୀ—୫ଜଣ
ଶ୍ରୀ ରମାକାନ୍ତ ମିଶ୍ର(କଂଗ୍ରେସ)—୪୦,୬୪୨
ଶ୍ରୀମତୀ ଶାନ୍ତିଦାସ (ମ) (ଜନତା)—୧୨,୯୬୧

୬୨—ନୟାଗଡ଼

ଭୋଟଦାନ—୬୭,୩୦୧
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ଭାଗବତ ବେହେରା (ଜନତା)—୩୨,୯୬୨
ଶ୍ରୀ ବଂଶୀଧର ସାହୁ (କଂଗ୍ରେସ)—୨୮,୨୫୭

୬୩—ଖଣ୍ଡପଡ଼ା

ଭୋଟଦାନ—୬୬,୭୧୫
ପ୍ରତିଦ୍ୱନ୍ଦୀ—୩ଜଣ
ଶ୍ରୀ ବଭୂତିଭୂଷଣ ସିଂହ ମର୍ଦ୍ଦ ରାଜ (କଂଗ୍ରେସ)—୩୩,୭୬୨
ଶ୍ରୀ ମହେନ୍ଦ୍ରକୁମାର ସ୍ୱାଇଁ (ସ୍ୱାଧୀନ)—୨୨,୯୯୭

୬୪—ଦଶପଲ୍ଲା

ଭୋଟଦାନ—୬୬,୮୧୪
ପ୍ରତିଦ୍ୱନ୍ଦୀ—୪ଜଣ
ଶ୍ରୀ ହରିହର କରଣ (କଂଗ୍ରେସ)—୩୭,୯୨୯
ଶ୍ରୀ ରୁଦ୍ରମାଧବ ରାୟ (ଜନତା)—୨୫,୧୫୯

## ଗଞ୍ଜାମ ଜିଲ୍ଲା

୬୫—ଜଗନ୍ନାଥପ୍ରସାଦ (ହ: ସଂ:)

ଭୋଟଦାନ—୩୫,୬୬୭
ପ୍ରତିଦ୍ୱନ୍ଦୀ—୨ଜଣ
ଶ୍ରୀ ଡମ୍ବରୁଧର ସେଠୀ (କଂଗ୍ରେସ)—୨୭,୦୫୭
ଶ୍ରୀ ସୁରେନ୍ଦ୍ରନାଥ ପାତ୍ର (ଜନତା)—୭,୯୪୫

୬୬-ଭଞ୍ଜନଗର

ଭୋଟଦାନ—୫୭,୧୬୪
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ଉମାକାନ୍ତ ମିଶ୍ର (କଂଗ୍ରେସ)—୩୨,୨୪୭
ଶ୍ରୀ ରାମକୃଷ୍ଣ ଗୌଡ (ଜନତା)—୨୦,୯୪୮

୬୭-ସୋରଡ଼ା

ଭୋଟଦାନ—୬୨,୨୫୦
ପ୍ରତିଦ୍ୱନ୍ଦୀ—୨ଜଣ
ଶ୍ରୀ ଶରତ ଚନ୍ଦ୍ର ପଣ୍ଡା (କଂଗ୍ରେସ)—୩୩,୬୨୮
ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ (ଜନତା)—୨୭,୩୫୧

୬୮-ଆସ୍କା

ଭୋଟଦାନ—୫୯,୬୮୮
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ରାଘବ ପରିଡ଼ା (କଂଗ୍ରେସ)—୨୬,୩୦୯
ଶ୍ରୀ ହରିହର ସ୍ୱାଇଁ (ଜନତା)—୧୯,୩୧୫

୬୯-କବିସୂର୍ଯ୍ୟନଗର

ଭୋଟଦାନ—୬୨,୭୩୯
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ରାଧାଗୋବିନ୍ଦ ସାହୁ (କଂଗ୍ରେସ)— ୨୫,୦୩୯
ଶ୍ରୀ ନିତ୍ୟାନନ୍ଦ ପ୍ରଧାନ (ସି.ପି.ଆଇ.)—୧୯,୯୯୩

୭୦-କୋଦଳା

ଭୋଟଦାନ—୭୪,୧୩୭
ପ୍ରତିଦ୍ୱନ୍ଦୀ—୨ଜଣ
ଶ୍ରୀ ରାମକୃଷ୍ଣ ପଟ୍ଟନାୟକ (ଜନତା)—୪୨,୯୧୧
ଶ୍ରୀ କାହ୍ନୁଚରଣ ନାୟକ (କଂଗ୍ରେସ)—୨୯,୮୪୪

୭୧-ଖଲ୍ଲିକୋଟ

ଭୋଟଦାନ—୭୦,୨୨୯
ପ୍ରତିଦ୍ୱନ୍ଦୀ—୩ଜଣ
ଶ୍ରୀମତୀ ଭି. ସୁଜ୍ଞାନୀ କୁମାରୀ ଦେଓ (ମ) (ଜନତା)—୩୭,୧୧୬
ଶ୍ରୀ ମାଗୁଣି ଚରଣ ପଲ୍ଲାଇ (କଂଗ୍ରେସ)—୩୦,୬୩୭

୭୨-ଛତ୍ରପୁର

ଭୋଟଦାନ—୬୦,୨୩୪
ପ୍ରତିଦ୍ୱନ୍ଦୀ—୬ଜଣ
ଶ୍ରୀ ଅଶୋକ କୁମାର ଚୌଧୁରୀ (କଂଗ୍ରେସ)—୨୮,୦୨୧
ଶ୍ରୀ ବିଶ୍ୱନାଥ ସାହୁ (ସି.ପି.ଆଇ.)—୨୧,୨୭୪

୭୩-ହିଞ୍ଜିଳି

ଭୋଟଦାନ—୫୪,୩୯୩
ପ୍ରତିଦ୍ୱନ୍ଦୀ—୮ଜଣ
ଶ୍ରୀ ଉଦୟନାଥ ନାୟକ (କଂଗ୍ରେସ)—୩୪,୭୫୫
ଶ୍ରୀ ପଦ୍ମଚରଣ ସାବତ (ଜନତା)—୧୧,୦୫୬

୭୪-ଗୋପାଳପୁର (ହ: ସଂ:)

ଭୋଟଦାନ—୫୪,୫୫୫
ପ୍ରତିଦ୍ୱନ୍ଦୀ—୪ଜଣ
ଶ୍ରୀ ଘନଶ୍ୟାମ ବେହେରା (କଂଗ୍ରେସ)—୩୫,୮୫୧
ଶ୍ରୀ ତ୍ରିନାଥ ବେହେରା (ଜନତା)—୧୫,୬୧୮

୭୫-ବ୍ରହ୍ମପୁର

ଭୋଟଦାନ—୫୨,୯୧୬
ପ୍ରତିଦ୍ୱନ୍ଦୀ—୮ଜଣ
ଶ୍ରୀ ଶିବଶଙ୍କର ସାହାଣୀ (କଂଗ୍ରେସ)—୨୬,୬୭୦
ଶ୍ରୀ ବିନାୟକ ମହାପାତ୍ର (ସ୍ୱାଧୀନ)—୧୭,୪୮୮

୭୬-ଚିକିଟି

ଭୋଟଦାନ—୭୨,୭୪୯
ପ୍ରତିଦ୍ୱନ୍ଦୀ—୨ଜଣ
ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରା (କଂଗ୍ରେସ)—୪୩,୬୬୪
ଶ୍ରୀମତୀ ଉଷାଦେବୀ(ମ) (ଜନତା)—୨୭,୦୫୮

୭୭-ମୋହନା

ଭୋଟଦାନ—୪୮,୭୪୬
ପ୍ରତିଦ୍ୱନ୍ଦୀ—୩ ଜଣ
ଶ୍ରୀ ଶରତ କୁମାର ଜେନା (କଂଗ୍ରେସ)—୩୦,୫୬୭
ଶ୍ରୀ ଉଦୟ ନାରାୟଣ ଦେବ (ଜନତା)—୧୫,୧୬୬

୭୮-ରାମଗିରି (ଆ: ସଂ:)

ଭୋଟଦାନ—୩୯,୦୩୨
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ହଳଧର କାର୍ଜି (ସ୍ୱାଧୀନ)—୧୭,୯୪୬
ଶ୍ରୀ ଗୋରାସାଙ୍ଗୋ ଶବର (କଂଗ୍ରେସ)—୧୬,୦୮୧

୭୯-ପାରଳାଖେମୁଣ୍ଡି

ଭୋଟଦାନ—୭୧,୫୬୯
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ତ୍ରିନାଥ ସାହୁ (କଂଗ୍ରେସ)—୩୩,୩୧୦
ଶ୍ରୀ ଦରପୁଲାଛନା ନାଇଡୁ (ଜନତା)—୨୮,୧୬୯

# କୋରାପୁଟ ଜିଲ୍ଲା

୮୦–ଗୁଣୁପୁର (ଆ: ସଂ)

ଭୋଟଦାନ–୩୮,୩୬୯
ପ୍ରତିଦ୍ୱନ୍ଦୀ–୩ ଜଣ
ଶ୍ରୀ ଭାଗିରଥୀ ଗମାଙ୍ଗୋ (କଂଗ୍ରେସ)–୩୦,୦୪୭
ଶ୍ରୀ ବିଜୟ କୁମାର ଗମାଙ୍ଗୋ (ଜନତା)–୩,୮୭୩

୮୧–ବିଷମ କଟକ (ଆ: ସଂ:)

ଭୋଟଦାନ–୪୫,୨୩୪
ପ୍ରତିଦ୍ୱନ୍ଦୀ–୩ ଜଣ
ଶ୍ରୀ ଡମ୍ବରୁଧର ଉଲାକା (କଂଗ୍ରେସ)–୨୮,୯୭୦
ଶ୍ରୀ ସାରଙ୍ଗଧର କଡ୍ରକ (ସ୍ୱାଧୀନ)–୯,୬୪୪

୮୨–ରାୟଗଡ଼ା (ଆ: ସଂ:)

ଭୋଟଦାନ–୫୨,୮୩୦
ପ୍ରତିଦ୍ୱନ୍ଦୀ–୩ ଜଣ
ଶ୍ରୀ ରାମଚନ୍ଦ୍ର ଉଲାକା (କଂଗ୍ରେସ)–୩୮,୧୭୬
ଶ୍ରୀ ଲାଲ ବିହାରୀ ହିମିରିକା (ଜନତା)–୮,୮୭୯

୮୩–ଲକ୍ଷ୍ମୀପୁର (ଆ: ସଂ:)

ଭୋଟଦାନ–୨୭,୪୨୦
ପ୍ରତିଦ୍ୱନ୍ଦୀ–୨ ଜଣ
ଶ୍ରୀ ଅନନ୍ତରାମ ମାଝୀ (କଂଗ୍ରେସ)–୧୬,୦୬୦
ଶ୍ରୀ ଅଖିଳ ସାଉତା (ଜନତା)–୧୦,୦୫୧

୮୪–ପଟାଙ୍ଗି (ଆ: ସଂ:)

ଭୋଟଦାନ–୨୬,୧୯୬
ପ୍ରତିଦ୍ୱନ୍ଦୀ–୫ ଜଣ
ଶ୍ରୀମତୀ ଚନ୍ଦ୍ରମା ସାନ୍ତା (ମ) (କଂଗ୍ରେସ)–୧୦,୮୧୭
ଶ୍ରୀ ଜୟରାମ ପାଙ୍ଗି (ଜନତା)–୧୦,୬୮୪

୮୫–କୋରାପୁଟ

ଭୋଟଦାନ–୩୪,୯୦୭
ପ୍ରତିଦ୍ୱନ୍ଦୀ–୫ ଜଣ
ଶ୍ରୀ ନୃସିଂହ ନନ୍ଦ ବ୍ରହ୍ମା (କଂଗ୍ରେସ)–୧୮,୦୨୪
ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର (ଜନତା)–୧୨,୯୩୨

୮୬–ମାଲକାନଗିରି (ହ: ସଂ:)

ଭୋଟଦାନ–୪୦,୧୫୭
ପ୍ରତିଦ୍ୱନ୍ଦୀ–୪ ଜଣ
ଶ୍ରୀ ନଦିଆବାସୀ ବିଶ୍ୱାସ (ସ୍ୱାଧୀନ)–୧୩,୮୮୫
ଶ୍ରୀ ନାକା କାନାୟା (ଜନତା)–୧୨,୬୮୩

୮୭–ଚିତ୍ରକୋଣ୍ଡା (ଆ: ସଂ:)

ଭୋଟଦାନ–୨୧,୮୭୯
ପ୍ରତିଦ୍ୱନ୍ଦୀ–୪ ଜଣ
ଶ୍ରୀ ଗଙ୍ଗାଧର ମାଡ଼ି (କଂଗ୍ରେସ)–୧୦,୩୮୯
ଶ୍ରୀ ପ୍ରହ୍ଲାଦ ଦୋରା (ଜନତା)–୬,୬୯୩

୮୮–କୋଟପାଡ଼ (ଆ: ସଂ:)

ଭୋଟଦାନ–୨୨,୦୧୭
ପ୍ରତିଦ୍ୱନ୍ଦୀ–୩ ଜଣ
ଶ୍ରୀ ବାସୁଦେବ ମାଝୀ (କଂଗ୍ରେସ)–୧୫,୫୩୬
ଶ୍ରୀ ଧ ନର ମାଝୀ (ସ୍ୱାଧୀନ)–୩,୧୫୮

୮୯–ଜୟପୁର

ଭୋଟଦାନ୍–୪୫,୩୮୪
ପ୍ରତିଦ୍ୱନ୍ଦୀ–୭ ଜଣ
ଶ୍ରୀ ଗୁପ୍ତ ପ୍ରସାଦ ଦାସ (କଂଗ୍ରେସ)–୩୧,୦୫୮
ଶ୍ରୀ ଭାରତ ଭୂଷଣ ପଟ୍ଟନାୟକ (ଜନତା)–୫,୩୧୩

୯୦–ନବରଙ୍ଗପୁର

ଭୋଟଦାନ–୪୫,୩୧୦
ପ୍ରତିଦ୍ୱନ୍ଦୀ–୭ ଜଣ
ଶ୍ରୀ ହବିବୁଲ୍ଲା ଖାଁ (କଂଗ୍ରେସ)–୩୩,୦୫୮
ଶ୍ରୀ ସଦାଶିବ ନାୟକ (ଜନତା)–୨,୮୯୬

୯୧–କୋଡ଼ିଙ୍ଗା (ଆ: ସଂ:)

ଭୋଟଦାନ–୨୯,୩୩୧
ପ୍ରତିଦ୍ୱନ୍ଦୀ–୨ ଜଣ
ଶ୍ରୀମତୀ ଭଗବତୀ ପୂଜାରୀ (ମ) (କଂଗ୍ରେସ)–୧୮,୫୪୫
ଶ୍ରୀ ସମ୍ବରୁ ମାଝୀ (ଜନତା)–୯,୩୭୮

୯୨–ଡାବୁଗାଁ (ଆ: ସଂ:)

ଭୋଟଦାନ–୪୧,୩୮୧
ପ୍ରତିଦ୍ୱନ୍ଦୀ–୩ ଜଣ
ଶ୍ରୀ ଡମ୍ବରୁ ମାଝୀ (କଂଗ୍ରେସ)–୨୦,୫୬୫
ଶ୍ରୀ ଭଗବାନ ମାଝୀ (ଜନତା)–୧୭,୮୮୮

୯୩–ଉମରକୋଟ (ଆ: ସଂ:)

ଭୋଟଦାନ–୩୬,୭୩୫
ପ୍ରତିଦ୍ୱନ୍ଦୀ–୫ ଜଣ
ଶ୍ରୀମତୀ ପରମା ପୂଜାରୀ (ମ) (କଂଗ୍ରେସ)–୧୭,୬୦୦
ଶ୍ରୀ ପୂର୍ଣ୍ଣଚନ୍ଦ୍ର ପୂଜାରୀ (ବି. ଜେ. ପି.)–୧୦,୪୬୪

## କଳାହାଣ୍ଡି ଜିଲ୍ଲା

୯୪—ନୂଆପଡ଼ା

ଭୋଟଦାନ—୪୫,୫୩୩,
ପ୍ରତିଦ୍ୱନ୍ଦୀ—୩ ଜଣ
ଶ୍ରୀ ଘାସିରାମ ମାଝୀ (ଜନତା)—୨୨,୦୦୩
ଶ୍ରୀ ପ୍ରେମ କୁମାର ଆଜାଦ (କଂଗ୍ରେସ)—୨୧,୨୫୯

୯୫—ଖଡ଼ିଆଳ

ଭୋଟଦାନ—୪୭,୬୦୪
ପ୍ରତିଦ୍ୱନ୍ଦୀ—୧୩ ଜଣ
ଶ୍ରୀ ଅନୁପ ସିଂହଦେଓ (କଂଗ୍ରେସ)—୧୧,୯୧୯
ଶ୍ରୀ ଦୁର୍ଯ୍ୟୋଧନ ମାଝୀ (ଜନତା)—୧୦,୯୨୫

୯୬—ଧର୍ମଗଡ଼ (ହ: ସଂ:)

ଭୋଟଦାନ—୨୮,୪୦୬
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ଯୁଗରାମ ବେହେରା (କଂଗ୍ରେସ) ୧୭,୦୩୩
ଶ୍ରୀ ପଞ୍ଚାନନ ସିନ୍ଧୁର (ଜନତା)—୭,୩୨୩

୯୭—କୋକସରା

ଭୋଟଦାନ—୩୮,୨୩୪
ପ୍ରତିଦ୍ୱନ୍ଦୀ—୮ ଜଣ
ଶ୍ରୀ ରାସବିହାରୀ ବେହେରା (କଂଗ୍ରେସ)—୧୫,୭୭୩
ଶ୍ରୀ ସୁରେନ୍ଦ୍ର କୁମାର ପାଟ୍ଟଯୋଶୀ (ଜନତା)—୯,୯୭୧

୯୮—ଜୁନାଗଡ଼

ଭୋଟଦାନ—୪୦,୫୪୦
ପ୍ରତିଦ୍ୱନ୍ଦୀ—୮ ଜଣ
ଶ୍ରୀ ବିକ୍ରମକେଶରୀ ଦେଓ (ଜନତା)—୨୦,୩୮୪
ଶ୍ରୀ ଜଗନ୍ନାଥ ମୁଣ୍ଡ (କଂଗ୍ରେସ)—୧୩,୬୧୬

୯୯—ଭବାନୀପାଟଣା (ହ: ସଂ:)

ଭୋଟଦାନ—୩୬,୮୪୧
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ଭକ୍ତ ଚରଣ ଦାସ (ଜନତା)—୧୬,୨୪୬
ଶ୍ରୀ ଦୟାନିଧି ନାଏକ (କଂଗ୍ରେସ)—୧୫,୭୨୯

୧୦୦—ନର୍ଲା (ଆ: ସଂ:)

ଭୋଟଦାନ—୨୮,୨୨୯
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ କୁମରମଣି ଶବର (କଂଗ୍ରେସ)—୧୪,୬୧୦
ଶ୍ରୀ ଧନେଶ୍ୱର ମାଝୀ (ଜନତା)—୭,୯୯୨

୧୦୧—କେସିଙ୍ଗା

ଭୋଟଦାନ—୫୦,୦୧୮
ପ୍ରତିଦ୍ୱନ୍ଦୀ—୩ ଜଣ
ଶ୍ରୀ ଭୂପିନ୍ଦର ସିଂହ (କଂଗ୍ରେସ)—୨୫,୩୧୪
ଶ୍ରୀ କିରଣ ଚନ୍ଦ୍ର ସିଂହଦେଓ (ଜନତା)—୨୨,୦୨୬

## ଫୁଲବାଣୀ ଜିଲ୍ଲା

୧୦୨—ବାଲିଗୁଡ଼ା (ଆ: ସଂ:)

ଭୋର୍ଟଦାନ—୪୫,୮୦୨
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ଲକ୍ଷ୍ମୀକାନ୍ତ ମଲ୍ଲିକ (କଂଗ୍ରେସ)—୨୫,୮୨୭
ଶ୍ରୀ ସଦାନନ୍ଦ କହଁର (ଜନତା)—୧୪,୬୮୩

୧୦୩—ଉଦୟଗିରି (ଆ: ସଂ:)

ଭୋଟଦାନ—୪୪,୦୯୨
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ନାଗାର୍ଜୁନ ପ୍ରଧାନ (କଂଗ୍ରେସ)—୨୫,୧୪୪
ଶ୍ରୀ ପାଞ୍ଜିଲ ପ୍ରଧାନ (ସ୍ୱାଧୀନ)—୬,୧୦୪

୧୦୪—ଫୁଲବାଣୀ (ହ: ସଂ:)

ଭୋଟଦାନ—୩୮,୮୭୩
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ଅଭିମନ୍ୟୁ ବେହେରା (କଂଗ୍ରେସ)—୧୭,୫୨୨
ଶ୍ରୀ ଶୂନ୍ୟବାସୀ ବେହେରା (ଜନତା)—୯,୨୨୨

୧୦୫—ବୌଦ

ଭୋଟଦାନ—୬୩,୫୯୮
ପ୍ରତିଦ୍ୱନ୍ଦୀ—୯ ଜଣ
ଶ୍ରୀ ସୁଜିତ୍ କୁମାର ପାଢ଼ୀ (କଂଗ୍ରେସ)—୨୬,୨୬୭
ଶ୍ରୀମତୀ ଗିରିଶ କୁମାରୀ ପ୍ରଧାନ (ମ) (ଜନତା)—୧୮,୦୫୫

## ବଲାଙ୍ଗୀର ଜିଲ୍ଲା

୧୦୬—ଟିଟିଲାଗଡ଼ (ହ: ସଂ:)

ଭୋଟଦାନ—୩୨,୭୧୩
ପ୍ରତିଦ୍ୱନ୍ଦୀ—୮ ଜଣ
ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନନ୍ଦ (କଂଗ୍ରେସ)—୨୦,୮୬୫
ଶ୍ରୀ ଯୋଗେନ୍ଦ୍ର ବେହେରା (ଜନତା)—୬,୮୭୨

୧୦୭—କଣ୍ଟାବାଂଝି

ଭୋଟଦାନ—୪୩,୯୨୪
ପ୍ରତିଦ୍ୱନ୍ଦୀ—୭ ଜଣ
ଶ୍ରୀ ଚୈତନ୍ୟ ପ୍ରଧାନ (ସ୍ୱାଧୀନ)—୧୯,୮୭୯
ଶ୍ରୀ ପ୍ରସନ୍ନ କୁମାର ପାଢ଼ (କଂଗ୍ରେସ)—୧୮,୪୬୦

୧୦୮—ପାଟଣାଗଡ଼

ଭୋଟଦାନ—୫୪,୭୨୧
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଡକ୍ଟର ସୁଶୀଳ କୁମାର ପୁଷ୍ଟି (କଂଗ୍ରେସ)—୨୨,୬୯୨
ଶ୍ରୀ ବିବେକାନନ୍ଦ ମେହେର (ସ୍ୱାଧୀନ)—୧୫,୪୭୬

୧୦୯—ସଇଁତଳା

ଭୋଟଦାନ—୪୦,୫୭୯
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ରାଧାକାନ୍ତ ପଣ୍ଡା (କଂଗ୍ରେସ)—୧୯,୪୪୭
ଶ୍ରୀ ଜଗ୍ନେଶ୍ୱର ବାବୁ (ଜନତା)—୧୧,୪୫୭

୧୧୦—ଲୋଇସିଂଘା

ଭୋଟଦାନ—୬୪,୮୯୧
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ବାଳଗୋପାଳ ମିଶ୍ର (ସ୍ୱାଧୀନ)—୪୧,୪୫୭
ଶ୍ରୀ ସୂର୍ଯ୍ୟଭାନୁ ମିଶ୍ର (କଂଗ୍ରେସ)—୧୮,୧୨୪

୧୧୧—ବଲାଙ୍ଗୀର

ଭୋଟଦାନ—୪୭,୮୬୪
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ମହମ୍ମଦ ମୁଜାଫର ହୁସେନ ଖାଁ (କଂଗ୍ରେସ)—୩୨,୦୮୦
ଶ୍ରୀ ମୁରଲୀଧର ଗୁରୁ (ଜନତା)—୯,୪୧୨

୧୧୨—ସୋନପୁର (ହ: ସଂ:)

ଭୋଟଦାନ—୩୭,୧୪୭
ପ୍ରତିଦ୍ୱନ୍ଦ୍ୱୀ—୭ ଜଣ
ଶ୍ରୀ ଅଚ୍ୟୁତ ବିଶ୍ୱାଳ (କଂଗ୍ରେସ)—୨୨,୪୬୩
ଶ୍ରୀ ଦେବରାଜ ସେଠ (ଜନତା)—୬,୩୮୯

୧୧୩—ବିନ୍‌କା

ଭୋଟଦାନ—୭୧,୪୯୯
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ଚିରରଞ୍ଜନ ମିଶ୍ର (କଂଗ୍ରେସ)—୩୧,୯୮୯
ଶ୍ରୀ ପଞ୍ଚାନନ ମିଶ୍ର (ଜନତା)—୨୭,୦୯୫

୧୧୪—ବୀରମହାରାଜପୁର

ଭୋଟଦାନ—୫୧,୯୨୬
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ କାର୍ତ୍ତିକ ପ୍ରସାଦ ତାରିଆ (କଂଗ୍ରେସ)—୧୯,୪୩୦
ଶ୍ରୀ ରବିନାରାୟଣ ପାଣିଗ୍ରାହୀ (ସ୍ୱାଧୀନ)—୧୩,୩୭୪

## ଢେଙ୍କାନାଳ ଜିଲ୍ଲା

୧୧୫—ଆଠମଲ୍ଲିକ

ଭୋଟଦାନ—୫୪,୧୭୭
ପ୍ରତିଦ୍ୱନ୍ଦ୍ୱୀ—୮ ଜଣ
ଶ୍ରୀ ଅମର ନାଥ ପ୍ରଧାନ (କଂଗ୍ରେସ)—୨୫,୬୦୭
ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ (ଜନତା)—୧୬,୫୯୪

୧୧୬—ଅନୁଗୁଳ

ଭୋଟଦାନ—୫୯,୮୫୯
ପ୍ରତିଦ୍ୱନ୍ଦ୍ୱୀ—୬ ଜଣ
ଶ୍ରୀ ପ୍ରଫୁଲ୍ଲ ମିଶ୍ର (କଂଗ୍ରେସ)—୨୯,୬୯୨
ଶ୍ରୀ ଅଦ୍ୱୈତ୍ୟ ପ୍ରସାଦ ସିଂହ (ଜନତା)—୨୧,୮୭୫

୧୧୭—ହିନ୍ଦୋଳ (ହ: ସଂ:)

ଭୋଟଦାନ—୪୪,୧୪୦
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ରବିନାରାୟଣ ନାଏକ (କଂଗ୍ରେସ)—୨୦,୪୮୬
ଶ୍ରୀ ତ୍ରିନାଥ ନାଏକ (ଜନତା)—୧୪,୭୯୭

୧୧୮—ଢେଙ୍କାନାଳ

ଭୋଟଦାନ—୪୧,୮୨୫
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀମତୀ ନନ୍ଦିନୀ ଶତପଥୀ (ମ) (ସ୍ୱାଧୀନ)—୨୬,୩୦୮
ଶ୍ରୀ ଭଜବ ସାହୁ (କଂଗ୍ରେସ)—୧୨,୨୯୦

୧୧୯—ଗଣ୍ଡିଆ

ଭୋଟଦାନ—୪୨,୪୨୫
ପ୍ରତିଦ୍ୱନ୍ଦ୍ୱୀ—୪ ଜଣ
ଶ୍ରୀ ପ୍ରଫୁଲ୍ଲ କୁମାର ଭଞ୍ଜ (କଂଗ୍ରେସ)—୨୭,୫୯୩
ଶ୍ରୀ ହଳଧର ମିଶ୍ର (ସ୍ୱାଧୀନ)—୧୧,୦୪୦

୧୨୦—କାମାକ୍ଷାନଗର

ଭୋଟଦାନ—୬୦,୫୦୬
ପ୍ରତିଦ୍ୱନ୍ଦ୍ୱୀ—୯ ଜଣ
ଶ୍ରୀ ପ୍ରସନ୍ନ ପଟ୍ଟନାୟକ (ବି. ଜେ. ପି.)—୨୮,୬୪୭
ଶ୍ରୀ ବାଇଧର ସ୍ୱାଇଁ (କଂଗ୍ରେସ)—୨୫,୫୩୫

୧୨୧—ପାଲଲହଡା

ଭୋଟଦାନ—୪୮,୧୯୭
ପ୍ରତିଦ୍ୱନ୍ଦ୍ୱୀ—୫ ଜଣ
ଶ୍ରୀ ବିଭୁଧେନ୍ଦ୍ର ପ୍ରତାପ ଦାସ—(କଂଗ୍ରେସ)—୨୦,୭୮୪
ଡକ୍ଟର ନୃସିଂହ ଚରଣ ସାହୁ—(ଜନତା)—୧୬,୧୬୨

୧୨୨-ତାଳଚେର (ହ: ସଂ:)

ଭୋଟଦାନ-୬୧,୯୮୭
ପ୍ରତିଦ୍ୱନ୍ଦୀ-୬ ଜଣ
ଶ୍ରୀ ଭଜମନ ବେହେରା (କଂଗ୍ରେସ)-୩୪,୯୯୨
ଶ୍ରୀ ବୃନ୍ଦାବନ ବେହେରା (ଜନତା)-୧୯,୨୩୭

## ସମ୍ବଲପୁର ଜିଲ୍ଲା

୧୨୩-ପଦ୍ମପୁର

ଭୋଟଦାନ-୪୬,୦୮୨
ପ୍ରତିଦ୍ୱନ୍ଦୀ-୩ ଜଣ
ଶ୍ରୀ ସତ୍ୟଭୂଷଣ ସାହୁ (କଂଗ୍ରେସ)-୨୮,୭୫୩
ଶ୍ରୀ ଦୁଃଖୀଶ୍ୟାମ ପ୍ରଧାନ (ଜନତା)-୯,୦୮୧

୧୨୪-ମେଲଛାମୁଣ୍ଡା

ଭୋଟଦାନ-୫୩,୪୯୮
ପ୍ରତିଦ୍ୱନ୍ଦୀ-୪ ଜଣ
ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା (କଂଗ୍ରେସ)-୨୬,୭୯୦
ଡଃ. ମୁରାରୀ ପ୍ରସାଦ ମିଶ୍ର (ଜନତା)-୨୩,୧୭୭

୧୨୫-ବିଜେପୁର

ଭୋଟଦାନ-୫୯,୩୩୫
ପ୍ରତିଦ୍ୱନ୍ଦୀ-୩ ଜଣ
ଶ୍ରୀ ନିକୁଞ୍ଜ ବିହାରୀ ସିଂ (ଜନତା)-୩୩,୬୯୧
ଶ୍ରୀମତୀ ସରସ୍ୱତୀ ପ୍ରଧାନ (ମ) (କଂଗ୍ରେସ)-୨୨,୮୮୦

୧୨୬-ଭଟଲୀ (ହ: ସଂ:)

ଭୋଟଦାନ-୫୯,୫୬୪
ପ୍ରତିଦ୍ୱନ୍ଦୀ-୫ଜଣ
ଶ୍ରୀ ମୋହନ ନାଗ (କଂଗ୍ରେସ)-୩୩,୯୯୪
ଶ୍ରୀ ବିଦାଧର କୁଅଁର (ବି.ଜେ.ପି.)-୧୮,୬୪୪

୧୨୭-ବରଗଡ

ଭୋଟଦାନ-୭୬,୬୯୫
ପ୍ରତିଦ୍ୱନ୍ଦୀ-୫ ଜଣ
ଶ୍ରୀ ଯଦୁମଣି ପ୍ରଧାନ (କଂଗ୍ରେସ)-୪୦,୧୯୫
ଶ୍ରୀ ଆନନ୍ଦ ଆଚାର୍ଯ୍ୟ (ଜନତା)-୨୯,୦୫୩

୧୨୮-ସମ୍ବଲପୁର

ଭୋଟଦାନ-୬୪,୦୩୮
ପ୍ରତିଦ୍ୱନ୍ଦୀ-୮ ଜଣ
ଶ୍ରୀ ଶ୍ରଦ୍ଧାକର ସୁପକାର (କଂଗ୍ରେସ)-୩୭,୧୧୩
ଶ୍ରୀ ସୁରେଶ ପୂଜାରୀ (ସ୍ୱାଧୀନ)-୧୨,୦୩୩

୧୨୯-ବ୍ରଜରାଜନଗର

ଭୋଟଦାନ-୫୭,୧୯୭
ପ୍ରତିଦ୍ୱନ୍ଦୀ-୬ ଜଣ
ଶ୍ରୀ ପ୍ରସନ୍ନ କୁମାର ପଣ୍ଡା (ସି. ପି. ଆଇ.)-୨୮,୧୬[illegible]
ଶ୍ରୀ ଭବାନୀ ଶଙ୍କର ଦୀକ୍ଷିତ (କଂଗ୍ରେସ)-୨୫,୫[illegible]

୧୩୦-ଝାରସୁଗୁଡ଼ା

ଭୋଟଦାନ-୪୮,୫୪୯
ପ୍ରତିଦ୍ୱନ୍ଦୀ-୮ ଜଣ
ଶ୍ରୀ ବୀରେନ୍ଦ୍ର ପାଣ୍ଡେ (କଂଗ୍ରେସ)-୩୧,୨୭୯
ଶ୍ରୀ ଇଶ୍ୱର ନାୟକ (ସି. ପି. ଆଇ.)-୧୦,୭୪୨

୧୩୧-ଲଇକେରା (ଆ: ସଂ:)

ଭୋଟଦାନ-୪୦,୬୦୭
ପ୍ରତିଦ୍ୱନ୍ଦୀ-୫ ଜଣ
ଶ୍ରୀ ହେମାନନ୍ଦ ବିଶ୍ୱାଳ (କଂଗ୍ରେସ)-୨୬,୭୪୫
ଶ୍ରୀ ବିନୋଦ ବିହାରୀ ସିଂ ବରିହା (ଜନତା)-୬,୪୦୦

୧୩୨-କୁଚିଣ୍ଡା (ଆ: ସଂ:)

ଭୋଟଦାନ-୨୫,୮୫୮
ପ୍ରତିଦ୍ୱନ୍ଦୀ-୨ ଜଣ
ଶ୍ରୀ ଜଗତେଶ୍ୱର ମିର୍ଦ୍ଧା (କଂଗ୍ରେସ)-୧୯,୯୨୭
ଶ୍ରୀ ଭୀମସେନ ଭୋଇ (ବି. ଜେ. ପି.)-୫,୨୨୨

୧୩୩-ରେଢ଼ାଖୋଲ (ହ: ସଂ:)

ଭୋଟଦାନ-୩୭,୭୪୧
ପ୍ରତିଦ୍ୱନ୍ଦୀ-୫ ଜଣ
ଶ୍ରୀ ଅଭିମନ୍ୟୁ କୁମାର (କଂଗ୍ରେସ) ୨୧,୪୬୧
ଶ୍ରୀ ବସନ୍ତ କୁମାର ମହାନନ୍ଦ (ଜନତା)-୧୧,୧୧୯

୧୩୪-ଦେଓଗଡ଼

ଭୋଟଦାନ-୪୪,୬୭୬
ପ୍ରତିଦ୍ୱନ୍ଦୀ-୪ ଜଣ
ଶ୍ରୀ ରାଜକିଶୋର ପ୍ରଧାନ (କଂଗ୍ରେସ)-୧୯,୯୨୫
ଶ୍ରୀ ପ୍ରଦୀପ୍ତ ଗଙ୍ଗଦେବ (ସ୍ୱାଧୀନ)-୧୬,୭୩୩

## ସୁନ୍ଦରଗଡ ଜିଲ୍ଲା

୧୩୫-ସୁନ୍ଦରଗଡ଼

ଭୋଟଦାନ- ୬୧,୮୧୭
ପ୍ରତିଦ୍ୱନ୍ଦୀ-୭ ଜଣ
ଶ୍ରୀ ଭରତେନ୍ଦ୍ର ଶେଖର ଦେଓ (ଜନତା)-୩୩,୨୦୫
ଶ୍ରୀ କିଶୋର ଚନ୍ଦ୍ର ପଟେଲ (କଂଗ୍ରେସ)-୨୨,୧୨୩

୧୩୬–ତଳସରା (ଆ: ସଂ:)

ଭୋଟଦାନ—୩୦,୧୩୩
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ଗଙ୍ଗାଧର ମାଝୀ (କଂଗ୍ରେସ)—୧୮,୬୪୧
ଶ୍ରୀ ନେଲସନ୍ ସୋରେଙ୍ଗ (ଲୋକଦଳ)—୭,୧୧୫

୧୩୭–ରାଜଗାଙ୍ଗପୁର (ଆ: ସଂ:)

ଭୋଟଦାନ—୪୯,୭୫୧
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ମଙ୍ଗଳ କିଶାନ୍ (ଜନତା)—୨୪,୨୫୦
ଶ୍ରୀ ମୁଖରାମ ନାଏକ (କଂଗ୍ରେସ)—୧୭,୧୯୪

୧୩୮–ବୀରମିତ୍ରପୁର (ଆ: ସଂ:)

ଭୋଟଦାନ—୩୨,୩୨୫
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ରେମିଶ୍ କେରକେଟ୍ଟା (କଂଗ୍ରେସ)—୧୬,୫୨୧
ଶ୍ରୀ କୁଆଁର୍ (ଝାଡ଼ଖଣ୍ଡ) - ୧୦,୧୯୧

୧୩୯–ରାଉରକେଲା

ଭୋଟଦାନ—୭୯,୩୬୫
ପ୍ରତିଦ୍ୱନ୍ଦୀ—୧୦
ଶ୍ରୀ ଦିଲୀପ କୁମାର ରାୟ (ଜନତା)—୩୫,୫୫୨
ଶ୍ରୀମତୀ ଲୋପାମୁଦ୍ରା ( ହାତି (ମ) (କଂଗ୍ରେସ)—୨୭,୯୩୭

୧୪୦–ରଘୁନାଥ ପଲ୍ଲୀ (ଆ: ସଂ:)

ଭୋଟଦାନ—୩୯,୧୪୩
ପତିଦ୍ୱନ୍ଦୀ—୬ ଜଣ
କୁମାରୀ ଫ୍ରିଡା ଟୋପ୍ନୋ (ମ) (କଂଗ୍ରେସ)—୧୮,୨୯୯
ଶ୍ରୀ ରବି ଦେହୁରୀ (ଜନତା)—୧୩,୧୧୧

୧୪୧–ବଣେଇ (ଆ: ସଂ:)

ଭୋଟଦାନ—୩୭,୬୨୮
ପ୍ରତିଦ୍ୱନ୍ଦୀ—୭ ଜଣ
ଶ୍ରୀ ବସନ୍ତ କୁମାର ସିଂ ଦଣ୍ଡପାଟ କଂଗ୍ରେସ)—୧୦,୫୦୯
ଶ୍ରୀ ରବିନାରାୟଣ ନାଏକ (ସି.ପି . ଏମ୍.)—୯,୯୬୧

## କେଉଁଝର ଜିଲ୍ଲା

୧୪୨–ଚଂପୁଆ–(ଆ: ସଂ:)

ଭୋଟଦାନ—୪୫,୮୧୯
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ଧନୁର୍ଜୟ ଲଗୁରୀ (କଂଗ୍ରେସ) —୨୦,୯୨୦
ଶ୍ରୀ ସହରାଇ ଓରାମ (ଜନତା)—୧୪,୪୪୯

୧୪୩–ପାଟନା–(ଆ: ସଂ:)

ଭୋଟଦାନ—୩୮,୩୬୧
ପ୍ରତିଦ୍ୱନ୍ଦୀ—୫ ଜଣ
ଶ୍ରୀ ହୃଷିକେଶ ନାଏକ (କଂଗ୍ରେସ)—୨୨,୬୪୩
ଶ୍ରୀ ମହେଶ୍ୱର ମାଝୀ (ଜନତା)—୧୦,୯୮୦

୧୪୪–କେନ୍ଦୁଝର (ଆ: ସଂ:)

ନିର୍ବାଚନ ସ୍ଥଗିତ

୧୪୫–ତେଲକୋଇ (ଆ: ସଂ:)

ଭୋଟଦାନ—୩୧,୯୩୧
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ପ୍ରାଣବଲ୍ଲଭ ନାଏକ (କଂଗ୍ରେସ)—୧୮,୯୮୩
ଶ୍ରୀ ନୀଳାଦ୍ରି ନାଏକ (ଜନତା)—୯,୦୨୬

୧୪୬–ରାମଚନ୍ଦ୍ରପୁର

ଭୋଟଦାନ—୫୩,୬୬୩
ପ୍ରତିଦ୍ୱନ୍ଦୀ—୯ ଜଣ
ଶ୍ରୀ ନିରଞ୍ଜନ ପଟ୍ଟନାୟକ (କଂଗ୍ରେସ)—୩୯,୦୪୯
ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର (ଜନତା)—୬,୭୬୯

୧୪୭–ଆନନ୍ଦପୁର (ହ: ସଂ:)

ଭୋଟଦାନ—୫୩,୩୭୮
ପ୍ରତିଦ୍ୱନ୍ଦୀ—୬ ଜଣ
ଶ୍ରୀ ଜୟଦେବ ଜେନା (କଂଗ୍ରେସ)—୩୧,୫୬୦
ଶ୍ରୀ ଦାଶରଥି ଜେନା (ଜନତା)—୧୭,୮୦୪

## ଓଡ଼ିଶା ବିଧାନ ସଭା

୧୯୮୫ ଏପ୍ରିଲ ୨୪ ତାରିଖର ନିର୍ବାଚନ ଫଳାଫଳ

ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଆଠଗଡ଼ ଓ ଖୋର୍ଦ୍ଧା ଦୁଇଟି ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ପରେ ଖୋର୍ଦ୍ଧାରୁ ଇସ୍ତଫା ପ୍ରଦାନ କରିଥିଲେ । ଏହା ଫଳରେ ଏପ୍ରିଲ ୨୪ ତାରିଖ ଦିନ ଖୋର୍ଦ୍ଧା ସହ କାକଟପୁର ଓ କେନ୍ଦୁଝର ନିର୍ବାଚନ ମଣ୍ଡଳୀରେ ଭୋଟ ଗ୍ରହଣ କରାଯାଇଥିଲା ।

୫୪–କାକଟପୁର

ଭୋଟଦାନ - ୮୮,୯୦୫
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ସୁରେନ୍ଦ୍ର ନାଥ ନାୟକ (ଜନତା)—୪୩,୫୮୫
ଶ୍ରୀ ଶଶିଭୂଷଣ ମିଶ୍ର (କଂଗ୍ରେସ)—୩୮,୦୧୪

୧୪୪–କେନ୍ଦୁଝର (ଆ: ସଂ:)

ଭୋଟଦାନ— ୩୬,୮୦୭
ପ୍ରତିଦ୍ୱନ୍ଦୀ—୪ ଜଣ
ଶ୍ରୀ ଛୋଟରାୟ ମାଝୀ (ଜନତା)—୧୭,୪୯୫
ଶ୍ରୀ ଡମ୍ବରୁଧର ନାଏକ (କଂଗ୍ରେସ)—୧୭,୩୭୧

୫୯–ଖୋର୍ଦ୍ଧା

ଭୋଟଦାନ—୬୬,୦୨୪
ପ୍ରତିଦ୍ୱନ୍ଦୀ—୭ ଜଣ
ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ (ସ୍ୱାଧୀନ)—୩୨,୭୭୪
ଶ୍ରୀ ବୈଦ୍ୟନାଥ ମିଶ୍ର (କଂଗ୍ରେସ)—୨୯,୭୭୭



ଓଡ଼ିଶାର ବର୍ଷୀୟାନ୍ କବି
୰ଡମ୍ବରୁଧର ପରିଡ଼ା
ଜନ୍ମ :-୧୯୦୬ ଚିତାଲାଗି ଅମାବାସ୍ୟା
ମୃତ୍ୟୁ :-୧୯୮୪ ସେପ୍ଟେମ୍ବର-୧

ମୋତେ ଚୁଇଁନା ମୁଁ ଲାଜକୁଳି ଲତା,
ତୁମେ ଚୁହିଁଥାଅ, ମୁହିଁ ଥାଏ ଚୁହିଁ
ତହିଁ ସରଗ ସୁଷମା ଥାଉ ପଛି
ଏଥୁ ଅଧିକ କି ହେବ ହେତୁ ଛୁଇଁ
ମୁଁ ଗୋ ଲାଜ ସରମରେ ଗଲି ମରି ।।

—୰ ଡମ୍ବରୁଧର ପରିଡ଼ା

## ଭ୍ରମ ସଂଶୋଧନ

୧୯୮୫ ଅଗଷ୍ଟ ମାସ ଉତ୍କଳ ପ୍ରସଙ୍ଗରେ ଶ୍ରୀ ଭବାନୀ ଚରଣ ପଟ୍ଟନାୟକଙ୍କ ଲିଖିତ ପ୍ରବନ୍ଧ "ମୋ ପିଲବେଳ କଥା କହୁଚି" ଦ୍ୱିତୀୟ ଅନୁଚ୍ଛେଦରେ ଭୁଲକ୍ରମେ '୧୯୩୦' ବୋଲି ପ୍ରକାଶ ପାଇଛି । ଏହାକୁ ୧୯୪୨ ବୋଲି ପଢ଼ିବାକୁ ଅନୁରୋଧ ।

—ସଂପାଦକ

GP—MP-VI (I. & P. R.) 34—6,000—21-9-1985



ବିରୋଧୀ ଦଳ ନେତାମାନଙ୍କ ସହ ପ୍ରଧାନମନ୍ତ୍ରୀ .........



P.M. WITH THE LEADERS OF OPPOSITION

